# ସପ୍ତପର୍ଣ୍ଣୀ

## ସାତୋଟି ଏକାଙ୍କିକା

କବିଚନ୍ଦ୍ର
ଡକ୍ଟର କାଳୀଚରଣ ପଟ୍ଟନାୟକ

କଟକ-ଷ୍ଟୁଡେଣ୍ଟସ୍ ଷ୍ଟୋର



ପ୍ରକାଶକ :

ଶ୍ରୀ ଅନନ୍ତ ମିଶ୍ର

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

ବାଲୁବଜାର : କଟକ : ୭୫୩୦୦୨

ପ୍ରଥମ ସଂସ୍କରଣ :

ଶିବରାତ୍ରି : ଫେବୃୟାରୀ ୧୯୭୬

ମୁଦ୍ରାକର :

ପ୍ରସାଦ ପ୍ରେସ : କଟକ-୭୫୩୦୦୨

ମୂଲ୍ୟ—ଚାରି ଟଙ୍କା ମାତ୍ର

*Saptaparni*

---

**Seven one-act Plays**

Kavichandra

Dr. Kalicharan Pattanayak

Publisher :

**Sri Anant Misra**

Cuttack Students' Store

Cuttack 753002

First Edition

February-1976

Printer :

Prasad Press : Cuttack : 753002



Price Rs. 4/—

*( This book has been printed on paper alloted by Govt. of India at concessional rate. )*

# ସୂଚୀ

# ପତିତପାବନ

## ପ୍ରାରମ୍ଭ

( ଅଦୂର ଚିଲିକା ହ୍ରଦ କୂଳରୁ ଡଙ୍ଗାବୁହା ନାଉରୀମାନଙ୍କ ଅସ୍ପଷ୍ଟ ନାଉରୀଆ ଗୀତ ଶୁଣା ଯାଉଥିଲା)

---

### (ଏକ)

(ଗୀତ ବନ୍ଦ ହୋଇଯିବା ପରେ ଘୋଡ଼ାଟାପୁର ଶବ୍ଦ ନିକଟରୁ ନିକଟତର ହେଲା ଗୋଟିଏ ଗାଆଁର କୁଳଘରର ଦ୍ୱାରରେ)

ରାମଚନ୍ଦ୍ରଦେବ (ପ୍ରବେଶ କରି)—କିଏ ଅଛ ?

(ପଛପଟରୁ ଜଣେ ଆସିବାପରି ପାଦ ଶବ୍ଦ ଶୁଣାଗଲା)

ରାମଚନ୍ଦ୍ର—ପାଣି, ମୁନ୍ଦେ ପାଣି !

ଯୁବତୀ—(ପ୍ରବେଶ ହୋଇ, ପାଣି ଢାଳିବା ଓ ରାମଚନ୍ଦ୍ର ପାଣି ପିଇଲେ)

ରାମଚନ୍ଦ୍ର—(ଦୀର୍ଘ ନିଶ୍ୱାସ ପକାଇ) ଓଃ !

ଯୁବତୀ—(ଟିକିଏ ଅଙ୍ଗଅଙ୍ଗ ହୋଇ) ତୁମେ······

ରାମଚନ୍ଦ୍ର—ରଜାଘର ଜଣେ ପାଇକ ।

ଯୁବତୀ—ରାଜା ପରା ଦକ୍ଷିଣ ଲଢ଼େଇରେ ? ଆଉ ତୁମେ ଲଢ଼େଇ ଛାଡ଼ି ଏଠି······

ରାମଚନ୍ଦ୍ର—ମୁଁ ଆସିଥିଲି ଗୋଟିଏ ବିଷୟର ସୁରାଖ ବାରିବାକୁ, ବାହୁଡ଼ି ଯାଇ ରଜାଙ୍କୁ ବାଡ଼ନ ଦେବ । ଡଙ୍ଗା ଖୋଜୁଛି, ଚିଲିକା ପାରି ହେବ ବୋଲି ।

ଯୁବତୀ—ଡଙ୍ଗା ? ଘାଟରେ ଖବର ହେଉଛି ଯେ, ଗଞ୍ଜାମଗଡ଼ ରଜା ମନା କରିଛନ୍ତି—ମିଳିବ ନାହିଁ ।

ରାମଚନ୍ଦ୍ର—(ବ୍ୟସ୍ତହୋଇ) ତେବେ ?

ଭିତରୁ ଡାକ ଶୁଭିଲା—ଆଲୋ ଏ ସର ! ଘୋଡ଼ାମୁହାଁ ଯୁଆଡ଼େ ଗଲା ସିଆଡ଼େ ଓଳିଏ ମଠ କଲା । ମ'ର ମ'ର । ଡାହାଣୀ ତ ମୋ ଭେଣ୍ଡା ପୁଅକୁ ଖାଇଲୁ । ଆଉ ମତେ ବେଗେ ଖାଉ ନାହୁଁ କାହିଁକି ? କାଳୁଣୀ ଅନ୍ଧୁଣୀଟା—ମରିଗଲେ ତରିଯାନ୍ତି । ଓଃ ! ସର !

ଯୁବତୀ—(ଚମକି) ହେଇଟି, ଶାଶୁ ଡାକଲେଣି ମୋତେ । ଉଠ, ଘୁଞ୍ଚ—ମୁଁ ଘରକୁ ଯାଏଁ । ତୁମେ ଥକିତ ହୋଇ ପଡ଼ିଲା ପରି ଦିଶୁଚ । ଟିକିଏ ଏଇଠି ବସେଇଁ ଯାଅ । ଖବର ମିଳିଲେ……

(ବାହାରୁ ଘୋଡ଼ାଟାପୁ ଶବ୍ଦ ଶୁଣାଗଲା)

ରାମଚନ୍ଦ୍ର—( ତରତର ହୋଇ ) ଗୋଟିଏ କଥା ରଖିବ—ମାଲୁଦ ଫୌଜଦାରର ଲସ୍କରମାନେ ମୋ ପିଛୁ ଧରିଛନ୍ତି । ମୋ ଆସିବା ଖବର ତାଙ୍କୁ କେଭେଁ କହିବ ନାହିଁ । ମୁଁ ଏଇ ଗୁଳିଆ ଭିତରକୁ ଟିକିଏ……

(ଗୁଳିଯିବା ଶବ୍ଦ ଓ କେତେଜଣ ଲସକରଙ୍କ ପ୍ରବେଶ ପାଦ ଶବ୍ଦ)

ଜଣେ ଲସକର—ଏ, ବାହାରେ ଯୋଡ଼ି ଘୋଡ଼ା ବନ୍ଧା ହୋଇଛି, ତା' ମାଲିକ କୁଆଡ଼େ ଗଲା ?

ଯୁବତୀ—ଘୋଡ଼ା ? କାହିଁ ? କେଉଁଠି ? କେହି ତ ଏଠିକି ଆସିନାହିଁ ।

ଲସ୍‌କର—ଏ ମାଇକନିଆଁ ! ସତ କହ । ଖୋରଧା ରଜାର ଘୋଡ଼ା ସେ । ରଜା କାହିଁ ? ତୁ ଜାଣୁ । ବତା, ସେ କୋଉଠି ଅଛୁ ।

ଯୁବକ—ମୁଁ ସତ କହୁଛି, କାହାକୁ ମୁଁ ଦେଖି ନାହିଁ ।

ଲସକର—ଠେକ ନିଅ ମ ମାଇକନିଆକୁ । ବଲେ ସତ କହବ ।

( ଆଗେଇ ଆସିଲେ )

ଯୁବକ—ଓଃ ଓଃ । ଘୁଞ୍ଚ—ଘୁଞ୍ଚ ମୋ ପାଖରୁ ।

ରାମଚନ୍ଦ୍ର—(ଦୌଡ଼ିଆସି) ଖବରଦାର । ପାଇକକୁଳ ବୋହୂ ସେ—ବଧବା । ତା ଦେହରେ ଟିପ ଛୁଅଁନା—ଘୁଞ୍ଚିଯାଅ । ନୋହିଲେ ଏଇ ତରବାରିରେ······

ଲସକର—ତରବାରି ? ଆଚ୍ଛା—ସମ୍ଭାଳ ଏଇ ବଚ୍ଚାକୁ ।

ଯୁବକ—(ରାମଚନ୍ଦ୍ରଙ୍କୁ ପଛକୁ ଠେଲି) ତୁମେ ଯାଅ, ତୁମେ ଘୁଞ୍ଚିଯାଅ । ଆଗେ ମୁଁ···ଆଃ···(ଚିତ୍କାର ଶୁଭିଲା—ଯୁବକ ତଳେ ପଡ଼ିବା ଶବ୍ଦ)

ଲସକର—ବନ୍ଦୀ କର । ଖୋଜୁଥିବା ଲୋକ ତ ଏଥର ମିଳିଗଲା । ବାସ୍ ।

(ରାମଚନ୍ଦ୍ରଙ୍କୁ ବାନ୍ଧିଲେ)

---

## (ଦୁଇ)

(ବନ୍ଦୀଘର, ବନ୍ଦୀ ରାମଚନ୍ଦ୍ର ଚିନ୍ତିତ ମନେ ପଦ ଚାରଣା କରୁଥିଲେ)

ରାମଚନ୍ଦ୍ର—(ଅନୁଚ୍ଚ ସ୍ୱରରେ) ମଞ୍ଜାଣିକୁ ଏଇଠାରେ ବଗ ମାଡ଼ି ବସିଥିଲା । ତେଣୁ ଏଇଠି···(ପଛପଟରୁ ଖୋଜା ଜବରଦସ୍ତ ଖାଁ ପ୍ରବେଶ) ଏଇ ପଠାଣରେ ବନ୍ଦୀଶାଳାରେ କଅଣ···ଜଗନ୍ନାଥ !

ଖୋଜା—ସଲାମ୍ ଆଲେକମ୍ ହଜୁର !

ରାମଚନ୍ଦ୍ର—(ଖଣ୍ଡି ଖଣ୍ଡି ଗଳାରେ) ସ-ଲା-ମ୍ ! କିଏ ତୁମେ ?

ଖୋଜା—ମିଜାକ୍ କୈସେ ହୈ ଜହାଁପନା ?

ରାମଚନ୍ଦ୍ର—ଜହାଁପନା ? ଜଣେ ସାମାନ୍ୟ କଏଦୀକୁ ଏ ପରିହାସ ପୁଣି କାହିଁକି ?

ଖୋଜା—ତୋବା ତୋବା । ଖୋରଧାର ରାଜାବାଦ୍‌ସାଙ୍କୁ କଏଦୀ କହିବାକୁ ଜିଭ ଓଲଟିବ ନାହିଁ ଜାହାଁପନା ! ତେର ଦିନରୁ ଦର୍ଶନ ମିଳୁନଥିଲା । ଯୋଗକୁ ଆଜି ହଜୁର ଫରମାଏସ୍ କଲେ—"ଯାଓ ଜବରଦସ୍ତ ଖାଁ, ଖୋରଧା ବାଦସାକା ସାଥ୍ ମୁଲାକାତ୍ କରକେ ଆଓ । ଓ ହମାରା ବରାଦର ।"

ରାଜା—ବରାଦର ! ମୁଁ ଜଣେ ସାମାନ୍ୟ କଏଦୀ । ଓଡ଼ିଶା ସୁବାର ମାଲିକ ତକ୍‌କୀଖାଁଙ୍କର ମୁଁ ପୁଣି ବରାଦର ?

ଖୋଜା—ମୈଁ ସଚ କହତା ହୁଁ ହଜୁର ! (ବାହାରକୁ ଯାଇ) ଆଓ ବେଟୀ; ସର୍‌ମାତା କ୍ୟୁଁ ? ଆଓ ଆଓ, ଅନ୍ଦର ଆଓ ।
(ଜଣେ ଅବଗୁଣ୍ଠନବତୀ ଯୁବତୀ ପ୍ରବେଶ)

ରାଜା—କିଏ ସେ ରମଣୀ ?

ଖୋଜା—ହଜୁର୍ ! ମୁର୍ସିଦାବାଦ ନବାବ ସୁଜାଖାଁଙ୍କ ବେଟୀ । ନାଏବ ନାଜୀମ ତକ୍‌କୀଖାଁଙ୍କ ବହେନ ।

ରାଜା—ମୁଁ ତ ବହୁତ ଥର ଏଇ ବନ୍ଦୀଘର ଝରକା ଉହାଡ଼ରୁ ଯୁବତୀଙ୍କୁ ଗୋଲାପ ବଗିଚାରେ······

ଖୋଜା—(ହସି) ହାଁ ହାଁ ହଜୁର ! ଗୋଲାପ ବଗିଚାର ଏ ସେଇ ବସୋରା ଗୋଲାପ । ନାଏବ ନଜୀମଙ୍କର ଇଚ୍ଛା, ହଜୁର ତାଙ୍କର ବହେନ ଏଇ ରିଜିୟାବିବୀଙ୍କୁ ସାଦି କରିବେ ।

ରାଜା—ସାଦି ?


Digitised by srujanika@gmail.com

ଖୋଜା—ହାଁ ହାଁ ସାହେ । ନସୀବ-ନସୀବ କା ବାତ୍ ହୈ ସ୍ତେ । ଆପ୍ ହେବେ ଓଡ଼ିଶା ସୁବାର ନାଏବ ନାଜାମ ତକୀଖାଁଙ୍କର ବରାଦର୍—ଯାହା ଫଳରେ, କଟକ-ଖୋରଧା ଏକ ହୋଇଯିବ ହଜୁର । ହୁଁ କରନ୍ତୁ ନା ! ଏଇ ନଅନ୍ତୁ ପାନପତ୍ର । ସାହେର ଜବାବ୍ ହୋଇଗଲେ ଆମର ବେଟୀ ତରଫରୁ ପାନ ବଣ୍ଟାଯାଏ । ଧରନ୍ତୁ । (ପାନପତ୍ର ଦେବାବେଳେ ରାମଚନ୍ଦ୍ରଙ୍କ ହାତରୁ ତଳେ ଖସି ପଡ଼ିଲା) ଆହା-ହା ତଳେ ପକାଇ ଦେଲେ ? ଏ କଅଣ କଲେ ଜନାବ୍ ? ଥୋଡ଼ା ଗୌର କରିଏ । କଟକ ଆଉ ଖୋରଧାର ଖୁନ୍‌ଖରାବି ଆଚ୍ଛା ନହିଁ । ବରାଦରୀରେ ସବୁ ଦୂର ହୋଇଯିବ । ସାଏନ୍‌ସା ନବାବ୍‌ଜାଦାଙ୍କର ଏ ଦୋସ୍ତି, ଏ ବରାଦରୀର ଇଚ୍ଛା ଏଡେଇ ଦେଲେ···ଥୋଡ଼ା ଆଚ୍ଛାତର୍‌ସେ ଗୌର କିଜୟେ ଜବାବ ! (କହୁ କହୁ ଚାଲିଗଲେ) ମୈଁ ଆତାହୁଁ । ଥୋଡ଼ା ଶୋଚଯେ ।

ଯୁବତୀ—(କିଛିକ୍ଷଣ ପରେ) ମୋତେ ବିଶ୍ୱାସ କରନ୍ତୁ । ଏସବୁ ଷଡ଼ଯନ୍ତ୍ର ଭିତରେ ମୁଁ ନାହିଁ । ମୋର କିଛି କସୁର ନାଇଁ ।

ରାଜା—ତୁମେ···ତୁମେ କିଏ ?

ଯୁବତୀ—ମୁଁ ? ମାଆ ମୋର ନାଆଁ ରଖିଥିଲେ ଜବା । କିନ୍ତୁ ଏଇ ମୁସଲମାନମାନେ ମତେ ଡାକନ୍ତି ଋକିୟା । ମାଆ ମୋର ହିନ୍ଦୁ । ମୁର୍ସିଦାବାଦ୍‌ର ଜଣେ ବାଇଜୀ । ଜାଣେନା କିପରି ସେ ମୁସଲମାନ ହାତକୁ ଆସିଲେ । ମରିବାବେଳେ ତାଙ୍କର ଶେଷ ଇଚ୍ଛା ପୂରଣ ହୋଇ ପାରିଲା ନାହିଁ । ସେ ପୁରୁଷୋତ୍ତମ କ୍ଷେତ୍ରରେ ଜଗନ୍ନାଥ ଦର୍ଶନ କରି ମରିବାକୁ ଚାହିଁଥିଲେ—ହେଲା ନାହିଁ···ହେଲା ନାହିଁ । ମୁଁ ଶୁଣିଛି, ଆପଣ ସେଇ ଜଗନ୍ନାଥ ଦେଶର ରାଜା । (ବାହାରେ ଖୋଜାର କାଶ ଶୁଭିଲା)

ରାଜା—ତୁମେ ଜବା ? ଜଗନ୍ନାଥ ! (ହାତ ଯୋଡ଼ି ମୁଣ୍ଡକୁ ନେଲେ)

---

## (ତିନି)

(ସରର ଘର—ସମୟ ରାତ୍ରି)

ସର—ମଲ୍ ମଲ୍ ! ହତଲକ୍ଷ୍ମୀଆର ହାତ ଟିକିଏ ଗଲ୍ ନାହିଁ ପହଁରାଣ୍ଠା ମାରିଦବାକୁ ! ଚଟିଘର ବୋଲି କଅଣ ଅଗଣା ଠାରେ ଅଳିଆ ଗୁରା ଗଦା ମାରିଥିବ ? ରାତିଠାରେ ଓଳେଇବ ସିନା ! ଛିଃ ! (ଅଗଣା ଓଳେଇବା ଓ ବାହାରେ କବାଟ ଠକ୍ ଠକ୍ ଶବ୍ଦ) କିଏ ମ—ଏତେ ରାତିରେ ? ଜଗୁନା ! ଏ ଜଗୁନା !

ଜଗୁନା—(ଭିତରୁ କହି କହି ଆସିଲା) କଅଣ ଜାଲେ ମଲେ ନାମ ! ଓଃ ! ଦିନଯାକ ଚଳକାକୁଲେ ଖଟି ଖଟି···ଲୁ ଆଉ ମଣିଷକୁ ଟିକିଏ ଶୁଆଇ ବସାଇ ଦବୁ ନାହିଁ ! (ବିରକ୍ତ ହୋଇ) କଅଣ ?
(କବାଟ ବାଡ଼ଆ ଶବ୍ଦ)

ସର—ଆରେ ଶୁଭୁଛି ? ଦେଖି ଆଇଲୁ···କିଏ କବାଟ ବାଡ଼େଉଛି ?
(ପୁଣି ଶବ୍ଦ)

ଜଗୁନା—(ବିରକ୍ତ ହୋଇ) କିଏ ସେ କବାଟକୁ ଏମିତି ବାଡ଼େଉଛି ମ ? କଅଣ ଦୁଆର ଭାଙ୍ଗିବ ? ରହ, ଯାଉଛି ।
(ଭିତରକୁ ଚାଲିଗଲା)

ସର—(ଦୁଆର ଓଳାଉ ଓଳାଉ) ଆରେ ଜଗୁନା ! ଠାଙ୍ଗିଆଣ୍ଠା, ଠାଙ୍ଗିଆଣ୍ଠା ···ଆଉ ଆଲୁଅ ! ଚୋର କି ତସ୍କର କି ଲସ୍କର ? ଏତେ ରାତିରେ····
(ବାହାରେ କଥାବାର୍ତ୍ତା ଶବ୍ଦ)

ଅନ୍ତରାଳରୁ ଜଗୁନା—ହଁ, ସେଇ ଗୁଳିଆ ତଳେ ଘୋଡ଼ା ଦ'ଠା ଖଟେଇ ଦିଅ ।

ସର—ଘୋଡ଼ା ? ତେବେ କଅଣ ଲସ୍କର ?
(ଜଗୁନା ପ୍ରବେଶ)

ଜଗୁନ—(ଫୁସ୍ ଫୁସ୍ କରି କହିଲା) ଆଲେ ନାନ ! ଖୋରଧା ବକ୍‌ସିଙ୍କ ପାଇକ । ଘୋଡ଼ା ବାନ୍ଧୁଛନ୍ତି ।

ସର—କେଇ ଜଣ ?

ଜଗୁନ—ଦ'ଜଣ ।

ସର—(ଟିକଏ ଭାବି) ହଉ । ଏଇବାଟେ ନେଇ ଆ । ଯା—ମୁଁ ଯାଉଚି ।

(ଜଗୁନ ଚାଲିଗଲା)

ସର—ଓ···ବକ୍‌ସିଙ୍କ ପାଇକ ! ରଜାଙ୍କର ନୁହଁ ।

(ଅନ୍ତରାଳରୁ କଥାବାର୍ତ୍ତା ଶୁଭିଲା)

ଜଣେ ପାଇକ—ହଁ ମ, ଘଣ୍ଟାଏ ଟିକଏ ବସେଇଁବା କଥା । ପାହାନ୍ତାରୁ ପୁଣି ବାଟ ଦେଖିବା ।

ଅନ୍ୟ ଜଣେ—କପାଳକୁ ଚଟିଘରଟିଏ ଏଠି ଥିଲା ବୋଲି···

(ସର ଅଗଣାରୁ ଚାଲିଗଲା —ପାଇକ ଓ ଜଗୁନ ପ୍ରବେଶ)

ଜଗୁନ—ସେଇପଟେ ଘରକୁ ଯା ।

ପାଇକ—ହଁ, ଯିବା ଯେ···ଦାନାପାଣି ଖିଆପିଆ ନାଇଁ । ଟିକଏ ଏଇଠି ଆଗ ଅଗଣାରେ ଥକ୍‌କା ମାରୁଁ । ବସିପଡ଼···ବସିପଡ଼ ଭାଇ ।

ଜଗୁନ—(ତରତର ହୋଇ) ରହ ରହ । ଏ ଚାଞ୍ଚ ଉପରେ ବସ ।

୧ମ ପାଇକ—(ଦୀର୍ଘ ନିଃଶ୍ୱାସ ମାରି) ଓଃ ! ଖାସା ଅଗଣାଟିଏ । ସୁଲୁ-ସୁଲିଆ ପବନ ବହୁଛି, ବସ । (ବସିଲେ)

୨ୟ—(ପାଖରେ ବସି) ହଁ, ସବୁ ହେଇଚି ଯେ—ପେଟରୁ ତେଣେ ଯେ ପବନ ବାହାରି ପଳଉଛି । ହାଂଘା ଉଡ଼ୁଛି । ଦାନାପାଣି ଉପାସ, ଓଃ !

ନେପଥ୍ୟରୁ ସର—ଜଗୁନ ! ଜଗୁନ !

ଜଗୁନ—ଗଲି । (ଚାଲିଗଲା)

୧ମ—କଅଣ ପାଖରେ ଆଖରେ ହାଟ ଅଛି ନା ବଜାର ଅଛି ?

୨ୟ—ଥିଲେ ବା ଏତେ ରାତ୍ତରେ କଅଣ କୋଉଠୁ ମିଳିବ ?

୧ମ—(ହସି) ଏଠି ଖାଲି ଖଲିକା ପବନ ମିଳିବ ।

୨ୟ—ହଁ···ଯା' ବୋଇଲୁ । ସେଇ ପବନରୁ ପେଟେ ପେଟେ ଖାଇବା କଥା ।

ଜଗୁନ—(ଆସିଲା କହି କହି) ଏତେ ରାତ୍ତିରେ ଆଉ ରାନ୍ଧ ଦେବାକୁ ତ ସଜ ନାହିଁ । ଏଇ ହୁଡୁମ୍ବ, ଉଖୁଡ଼ା ଗଣ୍ଡାଏ ଗଣ୍ଡାଏ ଥିଲା । ଚଳିବ ?

୧ମ—(ହସି) ଓଃ, ଆଉ ପଚାରୁଚ ? ଏଇତକ ଅମୃତ ଆମର । ଖାଇଲେ କଇଡ଼ ଦେଇକରି ନିଅ । (ଖାଇବା ଆରମ୍ଭକଲେ) ତୁମେ ଯା' ଖାଇ, ଶୋଇବ ଯା' । ବହୁତ କଷ୍ଟ ପାଇଲ ଆମ ପାଇଁ ।

ଜଗୁନ—ଖାଇସାରି ସେଇ ଘଇଲୁ ନିବ, ନଶାଇବ । ପଡ଼ିଅଛି । ଚାଲଣୀ ରହିଲା । ମୁଁ ଗଲି ।

୧ମ—ହଁ, ତମ ଋଣ ସୁଝିହବ ନାହିଁ ।

(ଜଗୁନ ଗ୍ଳଲିଗଲା)

୨ୟ—କାଲିଁଲ ସାଙ୍ଗ, ତକଖାଁ ଆଉ ଖୋରଧା ରାଜା—ଦୁହେଁ ଥିଲେ ଅଣ୍ଣ-ମହୀଷ । କିଏ ଜାଣିଥିଲା ସେ ଦୁହେଁ ଫେର୍ ଶଳାଭଉଣୋଇ ହେବେ ! ବନ୍ଦୀଘରୁ ମୁକୁଳି ପୁଣି ରାମଚନ୍ଦ୍ର ଦେବ ଖୋରଧା ଗାଦିରେ ବସିବେ ! ଲକ୍ଷ୍ମୀ ପରମଗୁରୁଙ୍କୁ ଧନ୍ୟ କହିବା । ସେ ଏକା ବୁଦ୍ଧି ବଳରେ ରାମଚନ୍ଦ୍ର ଦେବଙ୍କୁ ଖୋରଧା ଫେରାଇ ଆଣିଲେ ସିନା !

୧ମ—ହଁ, ଚକ ଘୂରିଗଲା । ହେଲେ ବକ୍‌ସି ଏଥର ଯୋଉ ମସୁଧା ପାଞ୍ଚ-ଛନ୍ତି, ସେଥିରେ ରାମଚନ୍ଦ୍ର ଦେବଙ୍କ ଅକ୍‌କଲ ଗୁଡୁମ୍ ହୋଇଯିବ । ଜାଣିଚୁ ?

୨ୟ—କେମିତି ?

୧ମ — ଚିକାକୋଲ ଫଉଜଦାର କଟକ ସୁବା ନାଇବ ପାଖକୁ ଯୋଉ ପେସକସ୍ ଟଙ୍କା ପଠାଉଚି, ତାକୁ ଖୋରଧା କଲ୍ଲା ଭିତରେ ବାଟ-ମାରଣା କରି ନେବାକୁ ବକ୍‌ସି ଲଳିତା ପାଟ ମହାଦେଈଙ୍କ ପାଖକୁ ଗୁପ୍ତ ଚିଠାଉ ଦଉଚନ୍ତି। ତେଣେ କଟକ ସୁବାରୁ ଖୋରଧା ରାଜାଙ୍କୁ ଖବର ଆସିଚି—ଖବରଦାର, ପେସ୍‌କସ୍ ଟଙ୍କା ଯେମିତି ଭଲରେ ଭଲରେ କଟକ ମାଲଖାନାରେ ପହୁଞ୍ଚିବ। ଟଙ୍କା ବାଟ-ମାରଣା ହେଲେ ଅଠା ବୋଳା ହେବ ଖୋରଧା ରଜାଙ୍କ ମୁଣ୍ଡରେ କି ନାହିଁ ? କହିଲୁ ?

୨ୟ—ହବ। ହବ ନାଇଁ କେମିତି ? ବକ୍‌ସି ଘରି ବୁଦ୍ଧି ଆ।

୧ମ—ଏତକ ହେଲେ ତ ପୁଣି ଖଳା ଭଣେଇ ଅପଡ଼ ହୋଇଯିବେ। ରଜା ଧରା ହୋଇ ଯିବେ। ବକ୍‌ସି ରଜା ହେବେ। ଆମକୁ ସେ ଚିଠାଉ ନେଇ ବେଳ ପହର ସରିକି ପାଟମହାଦେଈଙ୍କ ପାଖେ ପହୁଞ୍ଚାଇ ଦେବାକୁ ହେବ। ଜାଣିଲ ଏଥର ?

୨ୟ—(ପାଣି ପିଇ) ହଉ, ଉଠ। ଘରକୁ ଚାଲ ଟିକିଏ ଡୁଳେଇ ପଡ଼ିବା, ରାତି ଜାଗ୍‌ଲୁ ଜାଗ୍‌ଲୁ ହଉଥିବ, ଘୋଡ଼ା କଷିବା, ଚିଠାଉଖଣ୍ଡି ହୁସିଆରରେ ରଖିଚଟି ?

୧ମ—ଘୋଡ଼ା ପିଠି ଲଦନ ତଳେ ଥଳିଆରେ ଅଛି।

୨ୟ—ହଉ। ସେଠଉଁ କିଏ ନବ ? ଥାଉ, ଆସ। (ଚାଲିଗଲେ)

ସର—(ପ୍ରବେଶ କରି ଲୁନ ଲୁନ କହିବା) ଜଗୁନ ! ଏ ଜଗୁନ। ଦେଖିଲୁ, ସେମାନେ ଶୋଇଲେଣି ?

ଜଗୁନ—(ପ୍ରବେଶ କରି, କାନେଇଁ) ହଁ, ଶୋଇବେଣି।

ସର—ଚାଲ, ଚାଲଆକୁ—ଘୋଡ଼ା ଯୋଉଠି ବନ୍ଧା ହୋଇଛନ୍ତି।

———

# (ଗ୍ୟ ଉ)

(ପୁଣ୍ଣ—ରାଜବାଟୀ, ସମାସୀନ ରାଜା ରାମଚନ୍ଦ୍ର ଦେବ)

ହରିଚନ୍ଦନ—(ବାହାରେ କାଶିବା ଶବ୍ଦ)

ରାମଚନ୍ଦ୍ର—କିଏ ? ଓଃ, ଆଠଗଡ଼ ହରିଚନ୍ଦନେ ? ଆସ ଆସ, ମୁଁ ତ ଆପଣଙ୍କ ବାଟ ଗୁହିଁ ରହିଥିଲି । (ହରିଚନ୍ଦନ ପ୍ରବେଶ)

ହରିଚନ୍ଦନ—ପ୍ରଣାମ ଆଜ୍ଞା ।

ରାମଚନ୍ଦ୍ର—ଜୟ ଜଗନ୍ନାଥ ! ବସନ୍ତୁ ବସନ୍ତୁ । (ଟିକିଏ ରହି) କଅଣ ବାଶିଲେ ?

ହରିଚନ୍ଦନ—ନାଁ, ଯେତେ ଘୋଡ଼ାକଲେ ପାଉଁଶ ଦେଲେ ନିଆଁ କି ଛପିବ ? ରାଷ୍ଟ୍ର ହୋଇଛି ସିଂହଳ ବ୍ରହ୍ମପୁରରେ ଦଧିବାମନ ମନ୍ଦିର ଭଙ୍ଗା-ଦେଲେ ନିଜେ ଖୋରଧାରଜା ସୁଲତାନ ଘାଜିମିଆଁଙ୍କୁ ଘୋଡ଼ା ଉପରେ ଥାଇ ଗ୍ରେଟ ମାରିଲେ । ଥୋକେ ପୁଣି କୁହାକୋହି ହେଉଛନ୍ତି ଘାଜିମିଆଁଙ୍କୁ ସ୍ୱୟଂ ଜଗନ୍ନାଥ ଯମପୁରକୁ ପଠେଇ ଦେଲେ ।

ରାମଚନ୍ଦ୍ର—ସବୁ ଜଗନ୍ନାଥଙ୍କ ଇଚ୍ଛା ।

ହରିଚନ୍ଦନ—ବାକି, ଏ କଥାକୁ ଲୋକେ ସତ ମଣୁ ନାହାନ୍ତି । ସମସ୍ତଙ୍କର ଧାରଣା ଯେ ଖୋରଧା ରଜା ଏକା ଗ୍ରେଟକେ ମିଆଁ ପୁଅର ଗଣ୍ଡି ମୁଣ୍ଡ ଅଲଗା ଅଲଗା କରି ଦେଲେ, ଘାଜିମିଆଁ ହିନ୍ଦୁ ଦେଉଳ ଭାଙ୍ଗି ମସ୍‌ଜିଦ୍ ତୋଳିବାକୁ ଯାଉଥିଲା ବୋଲି ।

ରାମଚନ୍ଦ୍ର—ଏ ଖବର ତକଖାଁ କାନ ହୋଇ ସାରିବଣି । ମତେ ସେ ନିଶ୍ଚୟ ସନ୍ଦେହ କରି ସାରିବଣି । ଏକେ ତ ମୁଁ ତାଙ୍କ ଇଦ ପରବକୁ ଯାଇନାହିଁ । ପୁଣି ଶଜସ୍ୱା ପଠାଇଥିବା ଶୁଆକୁ ମୁଁ ପଞ୍ଜୁରୀରୁ ଉଡ଼ାଇ ଦେଲି । ତକଖାଁ ରକ୍ତ ଗୁମ୍ଫଳ ଖେଳିବାଇବା

ବେଳକୁ ତଉଲ୍ କୁହାରେ ପାହାର ବାଜିଲା ପରେ ଘାଳମିଆଁ ର ହତ୍ୟା ମୁଁ କରିଛି ବୋଲି ଖବର ପାଇ ସେ କଅଣ ଆଉ···

ନଯୋଗ—(ପ୍ରବେଶ) କୁହାର ମଣିମା !

ରାମଚନ୍ଦ୍ର—କଅଣ ନଯୋଗ ?

ନଯୋଗ—ମଣିମା ! ଗାଉଁଲି ଲୋକ ଜଣେ କିଏ ରାମୁଙ୍କୁ ଭେଟିବାକୁ ଆସିଛି । କହୁଛି ଚିଠାଉ ଖଣ୍ଡେ ଆଣି ଆସିଛି, ରାମୁଙ୍କ ଛଡ଼ା ଆଉ କାହାରି ହାତକୁ ଦେବନାହିଁ ସେ ।

ରାମଚନ୍ଦ୍ର—(ଆଶ୍ଚର୍ଯ୍ୟ ହୋଇ) ଚିଠାଉ ? (ଟିକିଏ ରହି) ହଉ ଆସୁ ।

ହରିଚନ୍ଦନ—କି ଚିଠାଉ ଏତେବେଳେ ? କିଏ ସେ ଲୋକ ?

ରାମଚନ୍ଦ୍ର—ଜଗନ୍ନାଥେ ଜାଣନ୍ତି !

ନଯୋଗ—ଭିତରକୁ ଆସ । (ଜଗୁନି ପ୍ରବେ)

ଜଗୁନି—(ପ୍ରବେଶ କରି) ଖୋର୍ଦ୍ଧା ମଣିମା···

ରାମଚନ୍ଦ୍ର—ତୁମେ ?

ଜଗୁନି—ମୁଁ ଜଗୁନି, ମଣିମା ! ଏଇ ଚିଠାଉ ଖଣ୍ଡେ ଆଣିଛି । କୁହାର ।

ରାମଚନ୍ଦ୍ର—କିଏ ପଠାଇଛି ?

ଜଗୁନି—ଆଉ କାହାରି ହାତକୁ ଦେବ ନାହିଁ ବୋଲି ସରଦେଈ କହିଛି ।

ରାମଚନ୍ଦ୍ର—(ଟିକିଏ ଭାବି) ସର ଦେଈ ?

ଜଗୁନି—(ହସି) ସେଇମ, ଚିଲିକା କୂଳ—ଚଟିଘର ।

ରାମଚନ୍ଦ୍ର—(ଗମ୍ଭୀର ଭାବେ ଦୀର୍ଘ ନିଃଶ୍ୱାସ ମାରି) ଓଃ, ଦିଅ । ମୋତେ ଦିଅ ।

ଜଗୁନି—ହେଇଟି ।

ହରିଚନ୍ଦନ—ମଣିମା ହଠାତ୍ ଏମିତି ଗମ୍ଭୀର ହୋଇ ପଡ଼ିଲେ ଯେ ? କି ଚିଠି ସେ ?

ରାମଚନ୍ଦ୍ର—(ଚିଠି ପଢ଼ିବା) ଏକ ଗୁରୁତର ସମ୍ବାଦ । ଜଗନ୍ନାଥଙ୍କ ଇଚ୍ଛା । ଏ ଚିଠି ମୋ ହାତରେ ପଡ଼ିଲା । ବୁଝିଲ ଜଗଦ୍ଦେବ ! ବକ୍ସି ଲୋକଟିକୁ ଆପଣ କଅଣ ଭାବନ୍ତି ?

ହରିଚନ୍ଦନ—ମୋ ଅନୁମାନରେ ସେ ପକ୍କା ଦେଶଦ୍ରୋହୀ—ରାଜଦ୍ରୋହୀ ।

ରାମଚନ୍ଦ୍ର—ଠିକ୍ ବୁଝିଛନ୍ତି । ଏ ଚିଠି ତାଙ୍କର—ଲଳିତା ପାଟମହାଦେଈଙ୍କ ପାଖକୁ ଲେଖା । ଯାହାହେଉ (ହସି) ଜଗନ୍ନାଥ ଭରସା ।

ହରିଚନ୍ଦନ—ତାଙ୍କର ପାଇଁ ତ ଆପଣ ଆଜି କାଫେର୍ । ତାଙ୍କୁ ରଖିବା ପାଇଁ ତ ଖୋରଧା ରଜା ରାମଚନ୍ଦ୍ର ଦେବ କଲମା ପଢ଼ିଲେ । ସେ ଆପଣଙ୍କର ଭରସା ନ ହେବ ତ—କିଏ ହେବ ? ଘଟଣାଟା କଅଣ ଆଜ୍ଞା !

ରାମଚନ୍ଦ୍ର—କହୁଛି । ଶୁଣିବେ । (ତାଳି ମାରିଲେ ନିଯୋଗ ପ୍ରବେଶ) ଯାଙ୍କରେ ନିଅ ଯାଙ୍କୁ । ବହୁତ ବାଟରୁ ଆସିଛନ୍ତି । ଖିଆ ପିଆ କଥା ଆଗେ ବୁଝ ।

ନିଯୋଗ—ମଣିମା !

ଜଗୁନି—ଦେଖ କହିଚ ଚଟାଉଟି ଦେଇ ତୁରନ୍ତ ବାହୁଡ଼ି ଯିବାକୁ ।

ରାମଚନ୍ଦ୍ର—ଯିବ, ଯିବ । ଆଗେ ଭିତରକୁ ଯାଅ । ଖିଆପିଆ ସାର । ଯାଅ ।

ନିଯୋଗ—ଆସ, (ଗୃହଗଲେ ଦୁହେଁ)

ରାମଚନ୍ଦ୍ର—ହଁ ଜଗଦ୍ଦେବ ! ଚିକାକୋଲରୁ ଦୁଇ ଲକ୍ଷ ପେସିକସ୍ ଟଙ୍କା ନେଇ ତକେଁ ପାଖକୁ ଘୋଡ଼ାସବାର ଆସୁଛନ୍ତି । ଆମ ଖୋରଧା କିଲ୍ଲା ଭିତରେ ବାଟମାରଣା କରି ଟଙ୍କାତକ ଲୁଟି ନେବାକୁ ବକ୍ସିଙ୍କର ଏ ମନ୍ତ୍ରଣା ଚଟାଉ । ଓଃ ! ବଧବା ପାଇକ-ସ୍ତ୍ରୀ ବଜ୍ର । ଆପଣା ଜୀବନକୁ ପାଣି ଛଡ଼ାଇ ମୋ ଜୀବନ ରଖିଥିଲା ଯୋଉ ଘର—ସେଇ ଏ ଚିଠିକି ହାତ କରି ମୋ ପାଖକୁ ପଠାଇଛି । ବାଃ-ବକ୍ସି ଏକା ମୋର ହିତକାଙ୍କ୍ଷୀ ବନ୍ଧୁ ।

ହରିଚନ୍ଦନ—ଉପକାଶି ବନ୍ଧୁ ! ବକ୍‌ସି ?

ରାମଚନ୍ଦ୍ର—ହଁ ହଁ । ପେସ୍‌କସ୍ ଟଙ୍କାଟା ଖୋରଧା କଲ୍ଲା ଭିତରେ ବାଟ-ମାରଣା ହୋଇଥିଲେ, ତକୀଖାଁ ବଳେ ମୋତେ ସନ୍ଦେହ କରି ଥାଆନ୍ତା । ଆଉ ମୁଁ ପୁଣି ହୋଇଥାଆନ୍ତି—ତା'ର ଭଗାରି । ବଡ଼ଦେଉଳ ଭାଙ୍ଗିବାକୁ ଆସିଥାଆନ୍ତା ସେ । ଜଗନ୍ନାଥେ ପୁଣି କୋଉ କଣରେ ପଶିଥାଆନ୍ତେ ।

ହରିଚନ୍ଦନ—ଏବେ କଅଣ ବଗ୍ଧୁରୁଛନ୍ତି ?

ରାମଚନ୍ଦ୍ର—(ହସି) କଚ୍ଛ ନାଇଁ । ଟଙ୍କାଟା କୌଣସି ମତେ ହାତପଇଠ କରିବାକୁ ହେବ ।

ହରିଚନ୍ଦନ—ଟଙ୍କା ନେଲେ ତ ଆପଣ ଦୋଷୀ ହେବେ ତକୀଖାଁ ପାଖେ ।

ରାମଚନ୍ଦ୍ର—ସେଇଆ ତ । ଧନ ତ ଏତେବେଳେ ଆମର ନାଇଁ । ଏଇ ଟଙ୍କାରେ ଫିରିଙ୍ଗି ବନ୍ଧୁକ କଣା ହବ । ତେଣିକି ଦେଖାଯିବ । ଘାଜଖାଁ ମରିଚ—ଇଦକୁ ଗଲା ନାହିଁ—ତକୀଖାଁ ରଙ୍ଗ ଆଖି କରି ବସିଥିବ । ଚାଲ । ଠିକଏ ପରମଗୁରୁଙ୍କ ଦେଖା ଦର୍କାର । ଆଉ ଉଚ୍ଛୁର କଲେ ଚଳିବ ନାଇଁ । ଜୟ ଜଗନ୍ନାଥ ! ଆସ ।

---

## (ପାଞ୍ଚ)

(ତକୀଖାଁଙ୍କ ଦରବାର ଗୃହ । ନାଚ ହେଉଥିଲା)

ତକୀଖାଁ—ନାବାମ୍, କୋଇ ହୈ ?

କର୍ମଚାରୀ—(ପ୍ରବେଶ କରି ସଲାମ କଲେ) ଜନାବ୍ ।

ତକୀଖାଁ—ବକ୍‌ସିସ୍ ଦେ ଦୋ ।

କର୍ମଚାରୀ—ଖାନ୍ ଦୁନିଆଁର ମାଲିକ ଓଡ଼ିଶା ସୁବାର ନାଏବ ନାଜିମ୍ ସାହେବଙ୍କର ଇନାମ୍ ଖୁସି ସେ···(ସଲାମ କଲେ)

(ନର୍ତ୍ତକୀ ସଲାମ କରି ଇନାମ ନେଇ ପ୍ରସ୍ଥାନ)

ଫୌଜଦାର—(ପ୍ରବେଶ) ସଲାମ୍ ଜହାଁପନା ।

ତକୀଖାଁ—କ୍ୟା ଖବର ଫୌଜଦାର୍ ?

ଫୌଜଦାର—(କାନ୍ଦିବା ପରି) ବଡ଼ ବୁରା ବାତ୍ ହେଗୁଇ ହୈ ଜହାଁପନା ! ଘାଜି ସୁଲତାନ୍ ବେଗ୍...

ତକୀଖାଁ—କ୍ୟା ହୁଆ ? ବୋଲୋ । ଓ ତୋ ମନ୍ଦିର ଭାଙ୍ଗି ମସ୍‌ଜିଦ୍ ଠିଆ କରିବାକୁ ଲସ୍‌କର ନେଇ ଯାଇଥିଲେ ।

ଫୌଜ—ମନ୍ଦିରକୁ ଭାଙ୍ଗିବାବେଳେ ଅନେକ କୁଆଡୁ ଆସି କାଫେର୍‌ମାନେ ହାମେଲା କଲେ । ହଠାତ୍ ଜଙ୍ଗଲ ଭିତରୁ ଏକ ଶର ଆସି ମୌଲା ସାହେବଙ୍କ ଗ୍ରୀବରେ ବାଜିଲା । ବସ୍ ସେଇଠି ଘୋଡ଼ା ଉପରୁ ଢଳି ପଡ଼ିଲେ ।

ତକୀଖାଁ—କ୍ୟା ହୁଆ ? ମୌଲା ଘାଜି ଖତମ ହୋଗୟା ?

ଫୌଜ—ସାଥୀରେଥିବା ଆଠଜଣ ଲସ୍‌କର ବି ଖତମ୍ ।

ତକୀଖାଁ—(ରାଗିଉଠି) ଖାମୁସ୍ । କୌନ ହୈ ଏ ଦୁସମନ୍ ? କାହାକୁ ଦେଖିନାହଁ ?

ଫୌଜ—ନା ହଜୁର । ଲୋକେ କହୁଛନ୍ତି ଖୋରଧା ରଜା...

ତକୀଖାଁ—ଖୋରଧା ରଜା, ହାଫିଜ୍ କାଦର ? ସେ ହତ୍ୟା କରିଛି ଘାଜିମିଆଁଙ୍କୁ ?

ଫୌଜ—ହାଁ ହଜୁର ସବୁ ଲୋକ ତ ଏକଥା କହୁଛନ୍ତି ।

ଅନ୍ୟଜଣେ—ଅସମ୍ଭବ ନୁହେଁ ହଜୁର ! ଖୋରଧା ରଜା ଆପଣଙ୍କ ବରାଦର ହୋଇ ସିନା ଏଠି ହାଫିଜ୍‌କାଦର୍, କିନ୍ତୁ ବାଲଘାଇ ଦେଖିଲେ ସେ ସେଇ ରାମଚନ୍ଦ୍ର ଦେବ ।

ଅନ୍ୟଜଣେ—ଆମେମାନେ ବି ସେକଥା ଶୁଣିଛୁ । ନ ହେଲେ ଏତେବଡ଼ ଇଦ୍ ପରବରେ ସମସ୍ତେ ଆସିଛନ୍ତି, ଆଉ ସେ ?

ଚକଖାଁ—( ଗମ୍ଭୀରଭାବେ ) ହୁଁ, ଆଚ୍ଛା···ବେଇମାନକୋ ଦେଖା ଯାଏଗା ।

ଜୁଲଫିକର—(ପ୍ରବେଶ) ସଲାମ୍ ହଜୁର ।

ଚକଖାଁ—କ୍ୟା ଖବର ଜୁଲ୍‌ଫିକର୍ ଅଲ୍ଲି ?

ଅଲ୍ଲୀ—ସବ୍ ଲୁଟ୍ ହୋଗୟା ଜାହାଁପନା !

ଚକଖାଁ—ଲୁଟ୍ ?

ଅଲ୍ଲୀ—ଦୋ ଲାଖ୍ ରୁପେୟା ଚକାକୋଲମ୍‌କା ପେସ୍‌କସ୍ ।

ଚକଖାଁ—କାହାଁ ?

ଅଲ୍ଲୀ—ଲୁଟ୍ ରାସ୍ତାମେ ହୋଗୟା ହଜୁର୍ ।

ଚକଖାଁ—କୈସେ ? ତୁମ ସବ୍ କାହାଁ ଥେ ? କଅଣ ଶୋଇଥିଲ ?

ଅଲ୍ଲୀ—ହଜୁର ! ଆଲ୍ଲାତାଲ୍‌କୋ ମାଲମ୍ । ଅଚାନକ ଏ ଘଟଣା ଘଟିଗଲା । ଆଗେ ପିଛେ ଘୋଡ଼ସବାର ଅଛୁ, ଫଉଜ ଅଛୁ, ମଝିରେ ଦ'ଟା ଦନ୍ତାହାତି—ଉସକା ଉପର ଲଦା ହୋଇଛି ପେସ୍‌କସ୍ ରୁପେୟା । ବାଣପୁର୍ ଟପିଗଲୁଁ । ସୋଲାରୀ ଘାଟ ଜଙ୍ଗଲ ପାଖେ ବେଳ ଆଖର୍ ହେବା 'ପର ଲାଗିଲା । ଟିକଏ ଟିକଏ ଅନ୍ଧାରଆ ହୋଇ ଆସୁଥାଏ । ଦୁଇ ପାଖରେ ଜବ୍‌ବର୍ ବାଉଁଶ ବଣ । ବାଟ ଭଲ ଦିଶୁ ନ ଥାଏ । ହଠାତ୍ ଯେମିତି ମନେହେଲା—ବର୍ଚ୍ଛା, ଶର ସବୁ ବାରଷ ହେବା ପରି ବୃଷ୍ଟିହୋଇ ପଡ଼ିଲା । ରଡ଼ି ଶୁଭିଲା ଜୟ ଜଗନ୍ନାଥ, 'ଜୟ ଜଗନ୍ନାଥ । ଘୋଡ଼ା ଗୁଡ଼ା ଘାବରା ହୋଇ ଇଧର୍ ଉଧର୍ ଭାଗିବାରେ ଲାଗିଲେ । ଅସୁଆର୍‌ମାନେ କିଏ କୋଉଠି ତଳେ ପଡ଼ିଗଲେ । ମୁଁ ପଛରୁ ତଲବାର କାଢ଼ି ବଣ ଭିତରକୁ ଭିଡ଼ିପଡ଼ିବ କଅଣ ଶର 'ଗୁଞ୍ଜିଗଲା ଆଖି ଆଗରେ । ଖାଲି ଶୁଣିଆଡ଼ୁ ଜୟ ଜଗନ୍ନାଥ, ଜୟ ଜଗନ୍ନାଥ ଆବାଜ୍— କାଫେରଙ୍କ ରଡ଼ି, ତା'ପରେ··· ତା'ପରେ (କାନ୍ଦ ଉଠିଲା)


Digitised by srujanika@gmail.com

ତକଖାଁ—(ରାଗି ଯୋଡା କରୁଡ଼ି) କମ୍‌ବକତ୍ । ମରଦ ଯୁଦ୍ଧ ମାଙ୍ଗ ? ଚୁପ୍‌କର୍ ।

ଅଲ୍ଲୀ—ହଜୁର୍, ଏ ଜୟ ଜଗରନାଥ ଆବାଜ୍ ଖୋରଧା ରଜାର ଲସ୍‌କର୍‌ଙ୍କ ଛଡ଼ା ଆଉ କଏ ଦେଇପାରେ ?

ତକଖାଁ—କୋଇ ହାଏ ? ଲେଯାଓ ଏ କମ୍‌ବଖତ୍ ନାଲ୍‌ଏକ ଜୁଲଫିକର୍‌କୋ, କଏଦୀଖାନାମେ ରଖୋ । ଚମଡ଼ାରୁ ଗୋଟି ଗୋଟି ରୁମ ଉପାଡ଼ି ପେସ୍‌କସ୍ ଟଙ୍କା ଆଦାୟ କରାଯିବ । ତା'ପରେ ଖୁରଧା କଲ୍ଲା ଖାସ୍ କରିବ । ଜଗନ୍ନାଥକୁ ଟୁକୁଡ଼ା ଟୁକୁଡ଼ା କରି ଜାଳିବ । ତବ ତୋ ମେଁ···

(ଜଣେ ଫୌଜ ପ୍ରବେଶ)—ସଲାମ୍ ଜାହାଁପନା ।

ତକଖାଁ—ହାଥ୍ ମେଁ ଓ କ୍ୟା ? ପିଞ୍ଜରା ଖାଲି । କ୍ୟା ବାତ ହୈ ? ଚଢ଼େଆ କାହାଁ ?

ଫୌଜ—ହଜୁର ! ସାହାଜାଦୀଙ୍କ ଚିଆ ଉଡ଼ିଗଲା । ପିଞ୍ଜରା ଖୋଲିଦେଲା ଖୋରଧା ରଜା ।

ତକଖାଁ—ସାହାଜାଦୀର ମଇନା ଉଡ଼ାଇ ଦେଲା ? କାଫେର୍ ହାଫିଜ ନାଦର ! କାହାଁ ହେଁ ? କାହାଁ ହୈ ଓ ବଦ୍‌ତମିଜ୍ ?

ରାମଚନ୍ଦ୍ର—(ପ୍ରବେଶ) ମୁଁ ଆସିଛି ।

ତକଖାଁ—(ଆଶ୍ଚର୍ଯ୍ୟ ହୋଇ) ତୁମ······ଆପ୍ ?

ରାମଚନ୍ଦ୍ର—କଥା ଅଛି । ଏକା କହିବ ।

ତକଖାଁ—(ଟିକିଏ ଭାବି) ଆଚ୍ଛା, ତୁମ୍‌ଲୋଗ ସବ୍ ଚଲେ ଯାଓ । (ସମସ୍ତେ ଚାଲିଗଲେ) ବୈଠୋ । କ୍ୟା ବାତ୍ ।

ରାମଚନ୍ଦ୍ର—ସାଏନ୍‌ସା ! ତୁମେ ମୋତେ ଭୁଲ୍ ବୁଝିଛ । ମୋର ଶତ୍ରୁ-ମାନେ ତୁମକୁ ମୋ ବିରୁଦ୍ଧରେ ନାନା କଥା କହି ତୁମର ମୋର

ଭିତରେ କଳ ଲଗାଇ ଦେବାକୁ ବସିଛନ୍ତି । ତା'ର ପ୍ରମାଣ ଦେଖନ୍ତୁ । ଏଇ ନିଅନ୍ତୁ ଚିଠି ।

ତକଖାଁ—ଚିଠି ? କି ଚିଠି ସେ ? କାହାର ଚିଠି ? କିଏ ଲେଖିଚି ?

ରାମଚନ୍ଦ୍ର—ଲେଖିଚି ବକ୍‌ସି । ସବୁ ତା'ର ଷଡ଼ଯନ୍ତ୍ର । ତୁମେ ତ ଜାଣ, ସାହାଜାଦୀ ରଜିୟାଙ୍କ ସହିତ ମୋର ବାହାଘର ପରେ ଖୋରଧା-ରାଣୀ ଲଳିତା ରାଗରେ ମୋତେ ଛାଡ଼ି ଚାଲି ଯାଇଛନ୍ତି । ବକ୍‌ସି ସେ ସୁଯୋଗ ନେଇ ତାଙ୍କ ପାଖକୁ ଏ ଚିଠି ଲେଖି ପଠାଇଥିଲା । ଯୋଗକୁ, ଚିଠି ମୋ ହାତରେ ପଡ଼ିଲା ।

ତକଖାଁ—ବକ୍‌ସିର କାହିଁକି ଏ ଷଡ଼ଯନ୍ତ୍ର ?

ରାମଚନ୍ଦ୍ର—ଖୋରଧାରେ ରାଜାହେବା ପାଇଁ । ଆପଣଙ୍କୁ ଆଉ ମତେ ଶତ୍ରୁ କରାଇ, ଆପଣଙ୍କ ଅନୁଗ୍ରହ ପାଇ ସେ ରଜା ହେବ । ଏଇ ମତଲବ ତା'ର ।

ତକଖାଁ—କଅଣ ଲେଖା ଅଛି ଚିଠିରେ ?

ରାମଚନ୍ଦ୍ର—ଟକାକୋଲ୍ ପେସକସ୍ ଟଙ୍କା ଖୋରଧା ଜିଲ୍ଲା ଭିତରେ ରାହାଜାନି କରିନେଲେ ଖୋରଧା ରଜା ଦୋଷୀ ହେବେ, ତକଖାଁ ରାଗିବେ; ଲଢ଼େଇ ଲାଗିବ । ଖୋରଧା ରଜା ପୁଣି ବନ୍ଦୀ ହେବେ ।

ତକଖାଁ—ତୋବା ତୋବା ! ବକ୍‌ସି ! ବଦ୍‌ତମିଜ୍ । ଐସା ଏକ ଅବିଶ୍ୱାସୀ ଆଦମୀ ?—

ରାମଚନ୍ଦ୍ର—ଜାଣ ତ ରଜିୟାଙ୍କୁ ମୁଁ କେତେ ସୁଖପାଏଁ । ଟିଆକୁ ମୁଁ ଆଦର କରି ଧରିବାବେଳକୁ ସେ ଖସି ପଳାଇଲା । ମୁଁ ତାକୁ ବାରି ଠିକ୍ କରି ଆସିବାକୁ ବସିଛି, ସେଇକବେଳେ ବାଟରେ ଏ ଚିଠି ମୋ ହାତରେ ପଡ଼ିଲା—ଦୁଇଜଣ ଅସୁଆରଙ୍କ ହାତେ ବକ୍‌ସି ପଠାଉଥିଲା ରାଣୀଙ୍କ ପାଖକୁ । ସେମାନଙ୍କୁ ହାତକରି ମୁଁ···

,

ଚଙ୍ଗୀ—ଓଃ···(ବ୍ୟସ୍ତହୋଇ) ଆଲ୍ଲା ମେହେରମାନ୍ । ହାଫିଜଭଯ୍ୟା—ଆଓ, ଆଓ । (ହାତ ମିଳାଇଲେ)

---

## ( ଛଅ )

( ଦୂରରୁ ଯାତ୍ରୀ କୋଳାହଳ ଭିତରେ ଗୀତ ଶୁଭୁଛି )

ରଘୁନ—

ଭଲ୍ ଲୀଳା ଲଗାଇଛ କଳା ଠାକୁର !
ସେବକ ଜନ ମଥାରେ ମାର ପାହାର ।୦।
ଡାକଲ୍ ତମକୁ ଯିଏ,
ମଥା ପିଟି ମଲ୍ ସିଏ
ଦୟାନିଧି ନାମ କିଏ ଦେଲ୍ ତୁମର ?

( ସମନ ପଛରୁ ଧକ୍କା ମାରଲା, ଗୀତ ବନ୍ଦ ହୋଇଗଲା )

ରଘୁନ—ଓଃ ! କିଏ ରେ ବେହ୍ନପୋ ?

ସମନ—(ଆଗକୁ ଆସି) ଇହାପ' ମାଡ଼ କାହ୍ଲା କରେ ? ଡାକଲେ ଶୁଭୁନାଇଁ ? ହାଁ ହାଁ କର କାହାକୁ ଚକେଇ ଠିଆ ହେଇଚୁ ସିଙ୍ଗଦୁଆରେ ? ବାସି ଅମଲ ଲୁଟିନାଇଁ କରେ ରଘୁନ ? ହାତରେ ସେ କଅଣ ଓହଳେଇଚୁ ?

ରଘୁନ—ଆରେ ମାହାରଦ—ମାହାରଦ ।

ସମନ—ଏତେ ? ବାଃ ! ଗଲବା ଭୋଜନଟାଏ ହବ ତେବେ ।

ରଘୁନ—ନାଇଁ ମ । ସେ ତୁମ ଆମ ପାଇଁ ନୁହଁ ।

ସମନ—ଆଉ ? କୁଆଡ଼ୁ ଯାତ୍ରୀ ଖେଦେ ହାବୁଡ଼ଛନ୍ତ କରେ ? ଆଜ୍ଞା ତ ତେବେ ଢୋନାଲ-ମୋନାଲ ।

ରଘୁନ—ଆରେ ନାହିଁମ । ଜଣକୁ ହନେଇଚ । ତା'ହାତରେ ମାହାରଦଙ୍କ ପଠେଇବ ବୋଲି ଯେ···

ସମନ—କୋଉଠିକି ? କୋଉ ଦୂରଦୂରାନ୍ତକୁ ପଠେଇବୁ ?

ରଘୁନ—ଆଉରି—(କାନରେ କହିବା) ଜାଣିଲୁ ?

ସମନ—ହାତେରିକେ । ବେହ୍ନପୋ'ର ନାଁ ଧରନା, ନାଁ ଧରନା । ସେଇଟା କଲମା ପଢ଼ି, ତକଖାଁ ଭଉଣୀକୁ ବାହା ହୋଇ, ଜାତି ହରେଇ ସାରିଲାଣି । ବୋଇଲା କଅଣ ନା ଠାକୁର ରଜା ! ଜାଣିଲୁ ରଘୁନ ! ଯେତୁ ମାହାରଦ ମାଗ୍ରହବ । ଗ୍ଚଲ ଗ୍ଚଲ । ମୁଁ ବୋହ୍ନି-ନେବ । ସ୍ନାନ ମଣ୍ଡପକୁ ଗ୍ଚଲ୍ । ସେଇଠି ବସି ମଉଜ କରିବା ।

ରଘୁନ—ଆରେ ତୁ'ଟା କିଚ୍ଛୁ ବୁଝିନୁ । ରାମଚନ୍ଦ୍ର ଦେବେ, କଲମା ପଢ଼ି ନ ଥିଲେ ଏ ଦାଉଁ ନ ଥାନ୍ତେ କି ଦେଉଳ ନ ଥାନ୍ତା । କଳା-ପାହାଡ଼ ପରି ବେହ୍ନପୋ ତକଖାଁ ବଡ଼ ଦେଉଳକୁ ଧୂଳିସାତ୍ କରି ସାରନ୍ତାଣି । ରାମଚନ୍ଦ୍ର ଦେବଙ୍କୁ ଚିହ୍ନିନୁ ତୁ । ଜଗନ୍ନାଥଙ୍କର ଏକନମ୍ବର ଭକ୍ତ ସେ । ସେ ନ ଥିଲେ ଖୋରଧା କାଲ୍ଲି ପଠାଣ ରାଜୁତି ହୋଇ ସାରନ୍ତାଣି । ଆମେ ସବୁ ବାର ଦୁଆର ଶୁଣ୍ଢି ପିଣ୍ଡା ହୋଇ କଲମା ପଢ଼ନ୍ତେଣି । ଏକା ଜଗନ୍ନାଥଙ୍କୁ ରଖିବାକୁ, ଧରମ ରଖିବାକୁ ଠାକୁରରଜା ଭେଶ ବଦଳାଇ ଆଜି ପଠାଣ । ବାକି ଭିତରଟା ସେଇ ଠାକୁର ରଜା । ରୋଜ୍ ମାହାରଦ ନ ପାଇଲେ ସେ ଜଳଗ୍ରହଣ କରନ୍ତି ନାହିଁ । ତାଙ୍କର ପାଖକୁ ଖୋରଧା ଯିବ ଏ ସଁ'ଧୂପ ମାହାରଦ ।

ସମନ—ଆରେ ରଘୁନ ! ଏତେ କଥା ତ ମୁଁ କିଚ୍ଛୁ ଜାଣି ନ ଥିଲି କି ଶୁଣି ନ ଥିଲି । ଓଃ ! ସତରେ ତେବେ ରାମଚନ୍ଦ୍ର ଦେବେ···

ରଘୁନ—ଆରେ, ସବୁ କଥା କହି ବସିଲେ ଖଣ୍ଡେ ପୁରାଣ ହବ । ସାନ ପରିଚ୍ଛଙ୍କୁ ଡକେଇଚ । ସେ ଏ ମାହାର୍ଦ୍ଦ ପଠେଇବା ବରାଦ କରିବେ । ଦରଶନକୁ ଆସିବେ ସେ । ବେଳ ହେଲାଣି ।


Digitised by srujanika@gmail.com

ସମନ୍ତ—ଗ୍ଲୁନୁ, ଆଉ ଏଠିଠାରେ ଠିଆ ହେଉଛୁ କାହିଁକି ? ବାଟ ପାହୁଣ୍ଡେ । ତାଙ୍କ ଘରଟି ଦେଇ ଆସିଲେ ହବନାହିଁ ? ଏଠୁ ବୋହି କରି ସେ ନେବେ, ଘରକୁ ଯିବେ, ଏତେ ନବରଙ୍ଗ କାହିଁକି ? ଗ୍ଲ ।

ରଘୁନ—ହଁ ହଁ, ଭଲ କହିଲୁ । ବାଟରେ ତତେ ସବୁ କଥା କହି କହି ଯିବି । ଗ୍ଆଲେ ।

(ଦୁହେଁ ବାହାରିଗଲେ—ସାନ ପରିଚ୍ଛା ଓ ପରମଗୁରୁ ଆସିଲେ)

ପରମଗୁରୁ—ବୁଝିଲ ସାନ ପରିଚ୍ଛାଏ ! ଖାଲି ରଥିପୁର କଅଣ ? ଶିଶୁପାଳଗଡ଼, ଧଉଳି ଗଡ଼—ସବୁ ତକଖାଁ ଲସ୍କର କାବୁ କରି ସାରିଥାନ୍ତେ । ଜଗନ୍ନାଥେ ଖଣ୍ଡି ଖଣ୍ଡି ହୋଇ ପୋଡ଼ା ହୋଇଥାନ୍ତେ । ରାମଚନ୍ଦ୍ର ଦେବେ ପକ୍କା ବୁଦ୍ଧିଆ । ଦାଆଁଙ୍କର ପରମଭକ୍ତ । ସେଇ ଦାଆଁ ତାଙ୍କୁ ବୁଦ୍ଧି ଦେଲେ । ଚକ୍ର ବୁଲି ପଡ଼ିଲା । ରାମଚନ୍ଦ୍ର ଦେବ ବର୍ଦ୍ଧମାନ ପାଇ ତକଖାଁ ପାଖରୁ ପୁଣି ବାହୁଡ଼ିଲେ ଖୋରଧା ଜିଲ୍ଲା ।

ସାନ ପରିଚ୍ଛା—(ଟିକିଏ ଭାବି) ଏସବୁ ତ ହେଲା—ହେଉଛି । ଠାକୁର-ରଜା ଜଗନ୍ନାଥ ଦର୍ଶନ କରିବେ କେମିତି ? ଦିନରାତି ତାଙ୍କ ଆଖିରୁ ଲୁହ ବୋହୁଛି । ଦେଉଳ ଭିତରକୁ ତ ଆଉ ପଶିପାରିବେ ନାହିଁ । ଧରମପାଇଁ, ଦାଆଁଙ୍କ ପାଇଁ—ଓଃ, କଅଣ ନ କଲେ ସେ ! ସେ କଲମାପଢ଼ି ଧରମ ଛାଡ଼ି ନଥିଲେ; ଆଜି···

ପରମଗୁରୁ—ଆହେ ସାନ ପରିଚ୍ଛାଏ ! ଦାହ ଆଉ ମନ—ଏ ଦି'ଟା ନଆରା ନଆରା । ରାମଚନ୍ଦ୍ର ଦେବଙ୍କ ଘଟଣାରୁ ତାଆର ପ୍ରମାଣ ଜଳଜଳ ଜଣାପଡ଼ୁଛି । ମୁଁ [ମୁକ୍ତିମଣ୍ଡପରେ, ଏକଥା ପକେଇଥିଲି—ରଜା କେମିତି ଜଗନ୍ନାଥ ଦର୍ଶନ କରିବେ । ସେମାନେ ସଭାରେ ଗୋଟେ ମସୁଧା ପକ୍କା କରିଛନ୍ତି । ମୁଁ ଲାଗିଛି ।

କେମିତି ଜଗନ୍ନାଥଙ୍କର ପତିତପାବନ ନାମ ସାର୍ଥକହେବ । ଠାକୁର-ରଜା, ଠାକୁର ରଜାହୋଇ ରହିବେ । ଜଗନ୍ନାଥ ସିଂହଦ୍ୱାରକୁ ବିଜେକରି ତାଙ୍କୁ ଦର୍ଶନ ଦେଇ ପତିତପାବନ ବୋଲାଇବେ । ଆଜି ସେଇ ଶୁଭଦିନ । ହେଇଟି ଶୁଣ—

(ଅଦୂରେ ଦେଉଳରୁ କାହାଳୀ ଓ ବାଦ୍ୟ ଶୁଭିଲା) ।

ପରମଗୁରୁ—ଚାଲ ବେଗେ । ଦେଉଳକୁ ଚାଲ ।

ସାନ ପରିଛା—ହଁ, ଜଗନ୍ନାଥେ ପତିତପାବନ । ତାଙ୍କ ଭକ୍ତର ଗୁହାରି ସେ ନ ଶୁଣିଲେ କିଏ ଶୁଣିବ ଆଉ ?

ବହୁ କଣ୍ଠରୁ—ଜୟ ଜଗନ୍ନାଥ-ଜୟ ପତିତପାବନ !

(ଦେଉଳ ଭିତରୁ ଲୋକ ଆସିଲେ)

( ବାଇଶି ପାହାଚକୁ ଯିବା ବାଟରେ ଡାହାଣ କରରେ ପହୁଞ୍ଚି ଚିତ୍ରକର ପତିତ-ପାବନ ଚିତ୍ର ଆଙ୍କିବା ଆରମ୍ଭ )

( ସିଂହ ଦ୍ୱାର ଆଗରେ ସାଲବେଗ ଉପସ୍ଥିତ ହୋଇ ଗାଇଲେ )

—ଗୀତ—

ଆହେ, ନୀଳ ଶଇଳ ପ୍ରବଳ ମତ୍ତ ବାରଣ !
ମୋ ଆରତ ନଳୀନ ବନକୁ କର ଦଳନ ॥
କୁରୁପତି ସଭାତଳେ ଦ୍ରୌପଦୀର ଜଣାଣ
କୋଟିବସ୍ତ୍ର ଦେଇ ହେଲେ ଲଜ୍ଜାକଲ ବାରଣ ॥

× × ×

କହେ ସାଲବେଗ ହୀନ ଜାତିରେ ମୁଁ ଯବନ
ଶ୍ରୀରଙ୍ଗାଚରଣ ତଳେ ଦଅ ବାରେ ଶରଣ ॥

# ସାଗର ମନ୍ଥନ

(ସ୍ୱର୍ଗପୁରୀ-ବିଷ୍ଣୁଙ୍କ ପ୍ରାସାଦ-ଅନନ୍ତଶୟନରେ ନାରାୟଣ, ଦେବରାଜ ପ୍ରବେଶ କରି ପ୍ରଣାମ କଲେ)

ନାରାୟଣ—ଆସନ୍ତୁ ଆସନ୍ତୁ । ଆସନ ଗ୍ରହଣ କରନ୍ତୁ ଦେବରାଜ ! ସମସ୍ତ କୁଶଳ ତ ?

ଦେବରାଜ—ଅନ୍ତର୍ଯ୍ୟାମୀ ! ଅଗୋଚର ଆପଣଙ୍କୁ କଅଣ ଅଛି ? ମୋର ଅଜ୍ଞାନକୃତ ଅପରାଧ ହେତୁ ସାରା ସ୍ୱର୍ଗ ବର୍ତ୍ତମାନ ଶ୍ରୀ-ହୀନ । ମହର୍ଷି ଦୁର୍ବାସା ମୋତେ ଗୋଟିଏ ପାରିଜାତ ମାଳା ଉପହାର ଦେଇ ଥିଲେ । ମୁଁ ତାହାକୁ ଗଜରାଜ ଐରାବତ ଶିରରେ ପିନ୍ଧାଇ-ଦେଲି । କିନ୍ତୁ ଅସାବଧାନ ଐରାବତ ତାହା ତଳେ ପକାଇ ଦେଲା । କେବଳ ସେତିକି ନୁହେଁ—ଦଳିଦେଲା ମଧ୍ୟ ।

ନାରାୟଣ—ଅନ୍ୟାୟ ! ଅନ୍ୟାୟ !

ଦେବରାଜ—ତାହାରି ପ୍ରତିଫଳ ଭୋଗ କରୁଛି ମୁଁ ଦେବ ! ମହର୍ଷି କୁପିତ ହୋଇ ଅଭିଶାପ ଦେଲେ—ସ୍ୱର୍ଗ, ଲକ୍ଷ୍ମୀ-ଚ୍ୟୁତ ହେଉ । ବହୁ ଅନୁନୟ ସତ୍ତ୍ୱେ ତାଙ୍କର କ୍ରୋଧ ଶାନ୍ତ ହେଲା ନାହିଁ,—କ୍ଷମା ମିଳିଲା ନାହିଁ ମୋତେ । ସ୍ୱର୍ଗପୁରୀ ଶ୍ରୀ-ହୀନ । ଉପାୟ ବିଧାନ ଲାଗି ମୁଁ ଶ୍ରୀଚରଣରେ ଶରଣାପନ୍ନ ।

(ପ୍ରବେଶ କଲେ ନାରଦ)

ନାରଦ—ଜୟ ନାରାୟଣ ! ଜୟ ନାରାୟଣ ! ଶ୍ରୀମନ୍ ନାରାୟଣ !

ନାରାୟଣ—ଆସନ୍ତୁ, ଆସନ୍ତୁ ଦେବର୍ଷି ! ଭଲ ବେଳରେ ଆପଣ ଆସିଛନ୍ତି । ଆସନ ଗ୍ରହଣ କରନ୍ତୁ ।

ଦେବରାଜ—ପ୍ରଣାମ ଦେବର୍ଷି !

ନାରଦ—ମନୋବାଞ୍ଛା ପୂର୍ଣ୍ଣହେଉ ଦେବରାଜ । ଆପଣ ଚିନ୍ତିତ ଥିବାପରି ମନେହୁଏ । ମୁଖମଣ୍ଡଳ ମ୍ଳାନ ।

ଦେବରାଜ—ଦୁର୍ବାସାଙ୍କ ଅଭିଶାପରେ—ମୁଁ ଏକା କାହିଁକି, ସମଗ୍ର ସୁରପୁରୀ ମଳିନ, ଶ୍ରୀହୀନ, ଲକ୍ଷ୍ମୀଚ୍ୟୁତ ।

ନାରଦ—ହଁ, କିଛି ଆଭାସ ପାଇଛି ମୁଁ ଆପଣଙ୍କ କଥାରୁ । ପ୍ରଭୁ ଅନ୍ତର୍ଯାମୀଙ୍କ ଭିନ୍ନ ଏହାର ପ୍ରତିକାର ଅସମ୍ଭବ ଦେବରାଜ !

ଦେବରାଜ—ଜାଣେ ଦେବର୍ଷେ, ତାଙ୍କର ଚରଣ ଶରଣ ଭିନ୍ନ ଏ ଦୁର୍ଦ୍ଦିନରେ ଉପାୟାନ୍ତର ନାହିଁ ।

ନାରାୟଣ—ଦେବର୍ଷେ ! ଦୁର୍ବାସା କୁପିତ । ତାଙ୍କର କ୍ରୋଧ ଶାନ୍ତ ସହଜ ସମ୍ଭବ ନୁହେଁ ।

ନାରଦ—ପ୍ରଭୁ ! ସହଜ-ସମ୍ଭବ କହିବା ଅପେକ୍ଷା ବରଂ ଅସମ୍ଭବ ବୋଲି ମୁଁ ମନେ କରୁଛି ।

ନାରାୟଣ—ଆପଣ କୌଣସି ଉପାୟ ଉଦ୍‌ଭାବନ କରନ୍ତୁ ଦେବର୍ଷେ !

ନାରଦ—ଅନ୍ତର୍ଯାମୀ ! ଜାଣି ଜାଣି ଏ ଗୁରୁ ଭାର ମୋ ଉପରେ ନ୍ୟସ୍ତ କରୁଛନ୍ତି କାହିଁକି ? ଦେବରାଜ ! କିଛି ଉପାୟ ପାଞ୍ଚିଥିଲେ ପ୍ରକାଶ କରନ୍ତୁ ।

ଦେବରାଜ—ମୁଁ ସମ୍ପୂର୍ଣ୍ଣ ଅସମର୍ଥ । ଲକ୍ଷ୍ମୀଚ୍ୟୁତ ହୋଇ ମୋର ବୁଦ୍ଧି ଭ୍ରଂଶ ଘଟିଅଛି । ମୁଁ ତେଣୁ ଦେବ ଚକ୍ରଧରଙ୍କର ଆଦେଶ ଅପେକ୍ଷା କରୁଛି ।

ନାରଦ—ସ୍ୱର୍ଗ ଲକ୍ଷ୍ମୀଚ୍ୟୁତ । ସାରା ଜଗତ ଲକ୍ଷ୍ମୀଛଡ଼ା ହେଲେ ଅଚିରେ ସୃଷ୍ଟିର ବିଲୟ ଘଟିବ । ତେଣୁ ଅବିଳମ୍ବେ ଉପାୟ ବିଧାନ ଆବଶ୍ୟକ ।

ଦେବରାଜ—ଯାହା ପ୍ରଭୁ ନାରାୟଣଙ୍କ ଇଚ୍ଛା ।


Digitised by srujanika@gmail.com

ନାରାୟଣ—ମୋ ବିଚାରରେ ଲକ୍ଷ୍ମୀଦେବୀଙ୍କ ଅନୁଗ୍ରହ ପ୍ରାର୍ଥନା କର୍ତ୍ତବ୍ୟ ।

ଦେବରାଜ—କିନ୍ତୁ ଦେବୀଙ୍କର ଦର୍ଶନ ଲାଭ ଯେ ଅସମ୍ଭବ ପ୍ରଭୁ ।

ନାରଦ—ସାଗର-ତନୟାଙ୍କ ପଦ ଦର୍ଶନଲାଗି ସାଗରଙ୍କୁ ନିବେଦନ କରିବାକୁ ହେବ ।

ନାରାୟଣ—ଦୁର୍ବାସାଙ୍କ ଅଭିଶାପ ତ ଜାଣନ୍ତି । ସାଗର ମନ୍ଥିଲି ଦେବା କ ସହଜ-ସମ୍ଭବ ?

ଦେବରାଜ—ପିତାମହ ଏବଂ କୈଳାସପତି ଦେବାଦେବଙ୍କ ସହ ଠିକଏ ପରାମର୍ଶ କଲେ ବୋଧହୁଏ···

ନାରାୟଣ—ସାଧୁ ସାଧୁ ।

ନାରଦ—ଉତ୍ତମ ପ୍ରସ୍ତାବ । ମୁଁ ବର୍ତ୍ତମାନ ଜଳଧିଙ୍କୁ ନିବେଦନ କରି ଆସିବି । ଦେବରାଜ ସ୍ୱର୍ଗପୁରୀକୁ ଫେରି ଯାଆନ୍ତୁ । ଯଥା ସମ୍ଭବ ଶୀଘ୍ର ସମ୍ବାଦ ପାଇବେ ।

ଦେବରାଜ—ଯଥା ଆଜ୍ଞା, ନମୋ ନାରାୟଣ !

ନାରଦ—ଜୟ ନାରାୟଣ, ଜୟ ନାରାୟଣ, ଜୟ ନାରାୟଣ ।

(ପ୍ରସ୍ଥାନ)

---

# ଶିବପୁରୀ

[ ଗୋଟିଏ ସଖୀ (ଚନ୍ଦ୍ରଲେଖା) ହାତରେ ଗୋଟିଏ ଥାଳରେ ଗୁଡ଼ାଏ ବେଲପତ୍ରୀ ନେଇ ପାଖରେ ଠିଆ ହୋଇଛି । ବସିଛନ୍ତି ଦେବୀ ପାର୍ବତୀ ]

ପାର୍ବତୀ—ଗଣି କରି ଆଣିଛୁ ତ ଚନ୍ଦ୍ରଲେଖା !

ଚନ୍ଦ୍ର—ଆଜ୍ଞା ମହିମା ! ଏକ ସହସ୍ର ବେଲପତ୍ରୀ ଗଣି ଗଣି ଆଣିଛୁ ।

ପାର୍ବତୀ—ସବୁଗୁଡ଼ିକ କଖୁଣ ନାଁ ?

ଚନ୍ଦ୍ର—ଆଜ୍ଞା, ମୁଁ ଆଉ ଚନ୍ଦନା ଦୁହେଁ ମିଶି ବାଛି ବାଛି ଆଣିଛୁଁ । ଚନ୍ଦନା ଆସୁଛି । ଗମ୍ଭୁସ ଫୁଲ ତୋଳି ପୂଜା ମନ୍ଦିରରେ ରଖି ଦେଇ ଆସିବ ।

ପାର୍ବତୀ—ଚନ୍ଦନ ?

ଚନ୍ଦ୍ର—ଘୋରି ସରିଛି । ଫୁଲହାର, ଆଉ ଟାହିଆ ଘେନି ଚନ୍ଦନାକୁ ଆସିବାକୁ କହି ଆସିଛି । ମଣିମା ବେଶ ବଢାଇଲେ ପୂଜାକୁ ବଜେ କରିବେ (ଚନ୍ଦନା ପ୍ରବେଶ ହାତରେ ଥାଳରେ ଫୁଲହାର, ଫୁଲଟାହିଆ ଇତ୍ୟାଦି) ହୋଇଟିତ ଚନ୍ଦନା ! ଆଣିଲୁ ?

ଚନ୍ଦନା—ହଁ, (ଫୁଲହାର ଓ ଫୁଲଟାହିଆ ଦେଖାଇ) ହୋଇଛି । (ପାର୍ବତୀଙ୍କ ଗଳାରେ ହାର ଓ ମଥାରେ ଟାହିଆ ପିନ୍ଧାଇ ଦେଲା) ।

ପାର୍ବତୀ—ଚନ୍ଦନା ! ପୂଜା ସାମଗ୍ରୀ ସବୁ ସଜଡ଼ା ସରିଛି ?

ଚନ୍ଦନା—ସବୁ ଠିକଣା କରି ସଜାଡ଼ି ଦେଇ ଆସିଛି ଯେ—ହେଲେ···

ପାର୍ବତୀ—ଆଉ ହେଲେ କଅଣ ?

ଚନ୍ଦନା—ଆଜି ବୋଧ ହୁଏ ପୂଜାପାଇଁ ଡେରି ହେବ ।

ପାର୍ବତୀ—କାହିଁକି ?

ଚନ୍ଦ୍ର—ପ୍ରଭୁ ନାହାନ୍ତି ।

ପାର୍ବତୀ—ନାହାନ୍ତି ? ସେଇଥି ପାଇଁ ପୁରି ଶୂନ୍ୟ ଶୂନ୍ୟ ଲାଗୁଛି । କାହାନ୍ତି ପ୍ରଭୁ ? ନନ୍ଦୀ, ନନ୍ଦୀ !

(ନନ୍ଦୀ ପ୍ରବେଶ କରି ପ୍ରଣାମ କଲେ)

ନନ୍ଦୀ—ଆଜ୍ଞା ହେଉ ମହାଦେବୀ !

ପାର୍ବତୀ—ପ୍ରଭୁ କାହାନ୍ତି ନନ୍ଦୀ ?

ନନ୍ଦୀ—ନାରଦ ଆଉ ଦେବରାଜ ଆସିଥିଲେ । ପ୍ରଭୁ ତାଙ୍କ ସହିତ ଯାଇଛନ୍ତି ।

ପାର୍ବତୀ—କାହିଁକି ? କିଛି ଜାଣିଛ ତୁମେ ?

ନନ୍ଦୀ—ନାରଦ କହୁଥିଲେ ମହର୍ଷି ଦୁର୍ବାସାଙ୍କର ଅଭିଶାପରେ ସ୍ୱର୍ଗ ଶ୍ରୀହୀନ ହେବାକୁ ବସିଲାଣି ।

ପାର୍ବତୀ—ଅଭିଶାପ ? ମହର୍ଷି ଦୁର୍ବାସାଙ୍କର ? କାହାକୁ ?

ନନ୍ଦୀ—ଦେବରାଜଙ୍କୁ ।

ପାର୍ବତୀ—ଦେବରାଜଙ୍କୁ ? ଅପରାଧ ?

ନନ୍ଦୀ—ମହର୍ଷି ଦୁର୍ବାସା ପରା ଦେବରାଜଙ୍କୁ ଗୋଟିଏ ପାରିଜାତ ମାଳା ଉପହାର ଦେଇଥିଲେ । ଦେବରାଜ ତାକୁ ଐରାବତ ଶିରରେ ପିନ୍ଧାଇଥିଲେ । ଐରାବତ ଅସାବଧାନ ହୋଇ ତାକୁ ତଳେ ପକାଇଦେଲା । କେବଳ ସେତିକି ନୁହେଁ, ଦଳିଦେଲା ମଧ୍ୟ । ଦୁର୍ବାସା ଭୀଷଣ କୋପ କରି ଅଭିଶାପ ଦେଇଛନ୍ତି । ସ୍ୱର୍ଗ ଲକ୍ଷ୍ମୀଚ୍ୟୁତ ହେଉ—ଶ୍ରୀହୀନ ହେଉ ।

ପାର୍ବତୀ—ଦୁଃସମ୍ବାଦ !

ନନ୍ଦୀ—ଦେବରାଜ ନାରାୟଣଙ୍କୁ ଜଣାଇଲେ । ସେ ଲକ୍ଷ୍ମୀଦେବୀଙ୍କୁ ଅନୁଗ୍ରହ ପ୍ରାର୍ଥନା କରିବାକୁ କହିଲେ ।

ଶିବା—କିନ୍ତୁ ଲକ୍ଷ୍ମୀଦେବୀଙ୍କ ଦର୍ଶନ ମିଳିବ ତ ସହଜ ନୁହେଁ । ସେତ ସାଗର ମଧ୍ୟରେ ଥିବେ ।

ନନ୍ଦୀ—ହଁ, ଏଥିପାଇଁ ପ୍ରଥମେ ସାଗରଙ୍କୁ ନିବେଦନ କରିବାକୁ ହେବ । ଆବଶ୍ୟକ ହେଲେ ସାଗର ମନ୍ଥନ ଲାଗି ଦେବତାମାନେ ଏକତ୍ରିତ ହୋଇ ସାଗର ମନ୍ଥନ କରି ଦେବତାମାନେ ଅମୃତ ପାନ କରିବେ ଆଉ ମହାଲକ୍ଷ୍ମୀଙ୍କୁ ଉଦ୍ଧାର କରିବେ । ପ୍ରଭୁ ଏଥିପାଇଁ ଦେବରାଜ ଓ ପିତାମହଙ୍କ ସହିତ ଯାଇଛନ୍ତି ।

ପାର୍ବତୀ—ଦେବତାମାନେ ଏକତ୍ରିତ ହୋଇ ସାଗର ମନ୍ଥନ କରିବେ ? କାହିଁ ? ଏ ସମ୍ବାଦ ତ ମୋତେ କେହି ଦେଇ ନାହାଁନ୍ତି । ଶଙ୍କରଙ୍କ ଉପେକ୍ଷା ? ଶଙ୍କର ଅପମାନ ? ଉତ୍ତମ । ଦେବତାମାନଙ୍କର ଗର୍ବ

ଚୂର୍ଣ୍ଣ କରିବ । ଯାଏଁ, ଦେଖି ଆସେଁ ଗର୍ବିତ ଦେବତାମାନେ କିପରି ସାଗର ମନ୍ଥନ କରୁଛନ୍ତି । (ଆସନରୁ ଉଠିଲେ)

ନନ୍ଦୀ—ଯଥା ଆଜ୍ଞା ମହାଦେବୀ ।

ପାର୍ବତୀ—ଚନ୍ଦ୍ରଲେଖା ! ଆସ ବଲ୍କଲ (ଚନ୍ଦ୍ରଲେଖା ହାତରୁ ଥାଳି ଫିଙ୍ଗି ଦେଲେ) ଚନ୍ଦନା ! ପୂଜା ସାମଗ୍ରୀ ଫିଙ୍ଗିଦିଅ । ଯାଅ (ଚନ୍ଦନା ଓ ଚନ୍ଦ୍ରଲେଖା ପ୍ରସ୍ଥାନ) କଅଣ ହେବ ଏ ମାଳା, ଏ ବେଶ ! (ଗଳାରୁ ମାଳା ଛିଣ୍ଡାଇ ଫିଙ୍ଗିଦେଲେ) ନନ୍ଦୀ ! ଦ୍ୱାର ରକ୍ଷା କର ।

(ଶୀଘ୍ର ପ୍ରସ୍ଥାନ)

---

## (ସାଗର ତୀର—ସମୁଦ୍ର ଗର୍ଜନ)

( ଶିବ, ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ର, ନାରଦ ପ୍ରଭୃତି ଉପସ୍ଥିତ )

ଦେବରାଜ—ଚନ୍ଦ୍ରଧର ! ମହାକାର୍ତ୍ତିକରେ ଆପଣଙ୍କ ଅନୁଗ୍ରହରୁ ପିନା ଏ ଅମୃତପାନ କରି ଦେବତାମାନେ ଅମର ।

(ସହସା କୋଳାହଳ)

(ସାଗରରେ ଊର୍ମୀ ଉତ୍ପନ୍ନ)

ନେପଥ୍ୟରୁ—ସର୍ବନାଶ ! ସର୍ବନାଶ !

ନାରାୟଣ—ସାଗର ବକ୍ଷରେ ଏ କି ଅଦ୍ଭୁତ ଊର୍ମୀ ?

ଦେବରାଜ—କି ଭୟଙ୍କର ଊର୍ମୀ । ଗାଢ଼ ଶ୍ୟାମବର୍ଣ୍ଣ ।

ବ୍ରହ୍ମା—ଉପାୟ ନାହିଁ । ଗୃହୁଁ ଗୃହୁଁ ସମସ୍ତେ ନିପାତ ହେବେ । ଏହାର ପ୍ରତିକାର ସହଜ-ସମ୍ଭବ ନୁହେଁ ।

ଦେବରାଜ—ହେ ନାରାୟଣ ! ଏ ବିପଦରୁ ଆପଣ ଏକମାତ୍ର ତ୍ରାଣକର୍ତ୍ତା । ଅନ୍ୟ କାହାର ଶକ୍ତି ନାହିଁ ।

ବ୍ରହ୍ମା—ଶକ୍ତି ! କାହାନ୍ତି ସେ ଶକ୍ତି ? ଶକ୍ତି ଏ ସାଗର ମନ୍ଥନରେ ଅନାମନ୍ତ୍ରିତା । ଶକ୍ତି କୁପିତା । ସେ ସାଗର ମନ୍ଥନ କରି ସମସ୍ତ ଜଳ ଗରଳରେ ପରିଣତ କରି ଦେଇଛନ୍ତି ।

ସାଗର—ଦେବଗଣ ! ଆପଣମାନେ ଅମୃତ ସନ୍ଧାନରେ ସମୁଦ୍ର ମନ୍ଥନ କରିଛନ୍ତି । କିନ୍ତୁ ଶକ୍ତିମୟୀଙ୍କୁ ଆବାହନ କରି ନାହାନ୍ତି । ମହାକାର୍ତ୍ତିକର ଏ ଅମାରଜନୀରେ ଦେବୀ କୁପିତା ହୋଇ ସମସ୍ତ ଜଳ ଶ୍ୟାମବର୍ଣ୍ଣ ଧୂମରେ ପରିଣତ କରି ଦେଇଛନ୍ତି । ଏ ଧୂମ ବାସ୍ତବ ଧୂମ ନୁହେଁ । ନୀଳବର୍ଣ୍ଣ ଉତ୍କଟ ଗରଳ, ଯାହା ପାନ କଲେ ଦେବପୁରୀ ଅବିଳମ୍ବେ ଧ୍ୱଂସ ହେବ । ଏକମାତ୍ର ଶିବ ଏହାର ପ୍ରତିବିଧାନ କର୍ତ୍ତା । ଦେବଦେବଙ୍କୁ ନିବେଦନ କରନ୍ତୁ—ଶକ୍ତିମୟୀଙ୍କ କୋପ ଶାନ୍ତି ନିମିତ୍ତ ଅନ୍ୟ କେହି ତ୍ରିଜଗତରେ ସମର୍ଥ ନୁହନ୍ତି ।

ଦେବରାଜ—ହେ ଶିବ ! ହେ ଆଶୁତୋଷ ! ଆପଣଙ୍କ ନାମ ସାର୍ଥକ ହେଉ । ଆପଣଙ୍କ ଅନୁଗ୍ରହ ଭିନ୍ନ ସୁରପୁରୀ ରକ୍ଷା ଅସମ୍ଭବ ।

ନାରାୟଣ—ଆପଣଙ୍କ ଭିନ୍ନ ଆଜି କାହାର ସାଧ୍ୟ ନାହିଁ ଯେ ଶକ୍ତିଙ୍କୁ ଶାନ୍ତ କରିବ ।

ମହାଦେବ—ଚିନ୍ତା ଦୂର କରନ୍ତୁ ଦେବଗଣ । ମୁଁ ସ୍ୱୟଂ ଏହି ଶ୍ୟାମବର୍ଣ୍ଣ ଗରଳ ପାନ କରିବି ।

ଦେବଗଣ—ନମୋ ନମୋ ଶିବଶଙ୍କର ! ଜୟ ଶିବଶଙ୍କର ଶମ୍ଭୁ !

ସାଗର—ଷାନ୍ତ ହୁଅନ୍ତୁ ବିଶ୍ୱମ୍ଭର ! ସାର୍ଥକ ହେଉ ଆପଣଙ୍କର ବିଷପାୟୀ ନୀଳକଣ୍ଠ ନାମ । ଦେବଗଣ ! ବର୍ତ୍ତମାନ ନିଶାର୍ଦ୍ଧ । ସମସ୍ତେ ମିଳିତ

ହୋଇ ଶକ୍ତିମୟୀ ଦେବୀଙ୍କର ଆରାଧନା କରନ୍ତୁ । ଦେବୀ ସନ୍ତୁଷ୍ଟା ହୁଅନ୍ତୁ । ବିଶ୍ୱ ସୃଷ୍ଟି ଧ୍ୱଂସ ନହେଉ ।

ଦେବରାଜ—ହେ ନୀଳକଣ୍ଠ ! ଆପଣ ଏକମାତ୍ର ସମର୍ଥ ପୁରୁଷ ଯେ କି ଶକ୍ତିଙ୍କ କ୍ରୋଧ ଶାନ୍ତ କରି ପାରିବେ । ଆପଣ ସଦୟ ହୋଇ ଆରାଧନାରେ ଯୋଗ ଦିଅନ୍ତୁ ।

ଶିବ—ତଥାସ୍ତୁ ।

ଦେବରାଜ—ଦେବୀ । ଶକ୍ତିମୟୀ ! ଅପରାଧ କ୍ଷମାକର ଜନନୀ । ଯୁଗେ ଯୁଗେ କଳିଯୁଗରେ ଆପଣଙ୍କର ଏହି ଆବିର୍ଭାବସ୍ମରଣ କରି ଜଗତରେ ଶ୍ୟାମାପୂଜା ବିଧି ପ୍ରଖ୍ୟାତ ହେଉ । ମାଆ ଶ୍ୟାମା ! ମା' କାଳୀ ! ଦେବତାମାନଙ୍କର ସଭକ୍ତି ପ୍ରଣତି ଗ୍ରହଣ କରି ଅପରାଧ କ୍ଷମା କର । ପ୍ରସନ୍ନ ହୁଅ ମାଆ—ଶ୍ୟାମା ଭଗବତୀ ।

ସମୂହ କଣ୍ଠ—ଜୟ ମା' କାଳୀ । ଜୟ ଭଗବତୀ ଶ୍ୟାମା !

(ସମସ୍ତ ପ୍ରଣାମ କଲେ)

---

# ମହାମାନବ

## ପ୍ରଥମ ଦୃଶ୍ୟ

ସ୍ଥାନ—ପୋରବନ୍ଦର

କାଳ—ରାତ୍ର ୧୨ଟା ପ୍ରାୟ ।

ପାତ୍ର—ଗାନ୍ଧିଜୀ ।

ଗାନ୍ଧିଜୀଙ୍କର ପଢ଼ିବା ଘର—ଆଲୁଅଟିଏ ଜଳୁଛି । ସେ ବସି ଏକ ମନରେ ଖଣ୍ଡିଏ କାଗଜରେ କଛି ଲେଖୁଛନ୍ତି । ଜଣାପଡ଼ୁଛି ସେ ବଡ଼ ଚିନ୍ତିତ ଓ ବିମର୍ଷ । ଏତିକବେଳେ ଡାକିଲେ ତାଙ୍କ ମାଆ ।)

ମାଆ—ବାବା ମୋହନ ?

ଗାନ୍ଧୀ—କଅଣ ମାଆ ?

ମାଆ—ରାତିଅଧି ୧୨ଟା ହେଲାଣି ଯେ ! ତୋର ଦୁର୍ବଳ ଦେହ । ଏତେ ରାତି ଅନିଦ୍ରା ହୋଇ ପଢ଼ିବସିଲେ ଅସୁସ୍ଥ ହୋଇ ପଡ଼ିବୁ । ଶୋଇବାକୁ ଆସ ।

ଗାନ୍ଧୀ—ହଁ, ମାଆ, ଯାଉଛି । (ତରତର ହୋଇ ଲେଖିଲେ । ଟିକିଏ ପରେ ଚିଠିଟି ଉଠାଇ ପଢ଼ିଲେ ଅଳ୍ପ ପାଟିକରି)

ପୂଜ୍ୟପାଦ ପିତାଜୀ,

ମୋର କେତେକ ସହପାଠୀଙ୍କ ସଙ୍ଗରେ ପଡ଼ି ବାଧ ହୋଇ ମୁଁ କେତେକ ଅନ୍ୟାୟ କାର୍ଯ୍ୟ କରିଛି । ସେଗୁଡ଼ିକ ଆପଣଙ୍କୁ ଜଣାଇଁ ନଦେବା ପର୍ଯ୍ୟନ୍ତ ମୋର ମନ ସ୍ଥିର ହେଉ ନାହିଁ । ଖାଇବା, ପିଇବା, ଶୋଇବା ଓ ପଢ଼ିବା କୌଣସି କାର୍ଯ୍ୟରେ ମନଲାଗୁ

ନାହିଁ । ଆପଣ ଏସବୁ ଶୁଣିଲେ ମୋ' ଉପରେ ବଡ଼ ବିରକ୍ତ ହେବେ ଓ ମୋତେ ଦଣ୍ଡ ଦେବେ ବୋଲି ଭାବୁଛି । ମାତ୍ର ମୋର ବିବେକ କହୁଛି ଯେ, ଆପଣଙ୍କୁ ଲୁଚାଇ ଯେଉଁ ଅନ୍ୟାୟ କରିଛି ତାର ପ୍ରାୟଶ୍ଚିତ୍ତ ଲାଗି ଶାସ୍ତି ପାଇବା ଉଚିତ ।

ଆପଣଙ୍କୁ ମୁହଁରେ କହିବାର ସାହାସ ମୋର ହେଲା ନାହିଁ । ତେଣୁ ପତ୍ରରେ ସମସ୍ତ କଥା ଜଣାଇବାକୁ ଯାଉଛି । ସଙ୍ଗ ଦୋଷରେ ପଡ଼ି ମୁଁ ଗୋପନରେ ଛେଳିମାଂସ ଖାଇଛି । କେତେ-ଜଣ ସହପାଠୀ ମୋତେ କହିଲେ ଯେ, ମାଂସ ଖାଇଲେ ମୋର ବଳ ଓ ସାହାସ ବଢ଼ିବ । କିନ୍ତୁ ମୁଁ ମାଂସ ଖାଇଲା ବେଳରୁ ଅନୁଭବ କରୁଛି ଯେପରି ଗୋଟିଏ ଜୀଅନ୍ତା ଛେଳି ମୋ' ପେଟ ଭିତରେ ମେଁ ମେଁ କରି ବୋବାଉଛି । ଏହାଛଡ଼ା ସେମାନଙ୍କ ସହିତ ମୁଁ କେତେଥର ବିଡ଼ି, ସିଗାରେଟ ଟାଣିଛି । ସେଥିପାଇଁ ଆପଣଙ୍କ ବାକ୍ସରୁ କେତେଥର ପଇସା ମଧ୍ୟ ଚୋରି କରିଛି । ଏହିସବୁ ଅନ୍ୟାୟ କାର୍ଯ୍ୟ ଲାଗି ମୁଁ ଅତ୍ୟନ୍ତ ମନସ୍ତାପ ଭୋଗ କରୁଛି ଏବଂ ଶପଥ କରି କହୁଛି, ଜୀବନରେ ଆଉ ଏଭଳି ପାପ କର୍ମ କେବେହେଲେ କରିବି ନାହିଁ । ମୋତେ ଆପଣ କ୍ଷମା କରନ୍ତୁ ।

ଆପଣଙ୍କର

ଚରଣସେବକ

(ଚିଠିଟି ପଢ଼ିସାରି ନିଜନାମ ସ୍ୱାକ୍ଷର କରି ବସିବା ବେଳେ ଭିତରୁ ମାଆ ପୁଣି ଡାକିଲେ—)

**ମାଆ**—ମୋହନା ! ଏକେ ତୋ' ବାପାଙ୍କ ଦେହ ବର୍ତ୍ତମାନ ଭଲ ନାହିଁ । ଏତେ ରାତିଯାଏ ଚୁହିଁକୁ ଶୁଣିଲେ ସେ ବିରକ୍ତ ହେବେ । ଆସ, ଶୋଇପଡ଼ ।

**ଗାନ୍ଧୀ**—(ଚିଠି ତଳେ ସ୍ୱାକ୍ଷର କରୁ କରୁ—) ଗଲି ମାଆ ।

(ଚିଠି ବନ୍ଦକରି ଚାଲିଗଲେ । )

## ଦ୍ୱିତୀୟ ଦୃଶ୍ୟ

(ଗାନ୍ଧିଜୀଙ୍କ ଘରେ ତାଙ୍କର ଭାଇ ଓ ଭାଇଙ୍କର ବନ୍ଧୁ ବସି କଥା ବାର୍ତ୍ତା ହେଉଥିଲେ ।

ବନ୍ଧୁ—ନାଁ ଭାଇ, ମୋହନର ବୁଦ୍ଧି ସୁଦ୍ଧି ଦେଖିଲେ, ମନେ ହେଉଛି ସେ ନିଶ୍ଚୟ ଦିନେ ଘରର ନାଆଁ ରଖିବ । ଏଠି ଆଦୌ ତାକୁ ପଢ଼ାଇବାଟା ସୁବିଧା ଜନକ ନୁହେଁ । ତାର ଉଚ୍ଚ ଶିକ୍ଷା ଦର୍କାର ।

ଭାଇ—ହୁଁ, ତୁମ ପ୍ରସ୍ତାବରେ ତ ମୁଁ ରାଜି ହେଲି । ମାଆ କିପରି ନିଷ୍ଠାରେ ଚଳନ୍ତି ସେ କଥାତ ଜାଣ ! ସେ ମୋହନକୁ—ବିଲାତ ପଠାଇବାକୁ ରାଜି ନୁହନ୍ତି । ନୋହିଲେ ସୁଖେ ଦୁଃଖେ ଯେପରି ପାରେଁ ମୁଁ, ତାର ବିଲାତର ପଢ଼ାଖର୍ଚ୍ଚ ଯୋଗାଇ ଦେବି ।

ବନ୍ଧୁ—ମାଆ କଅଣ କହୁଛନ୍ତି ?

ଭାଇ—ମାଆତ ଶୁଣିଛନ୍ତି ଯେ ବିଲାତକୁ ଗଲେ ଲୋକମାନେ ମଦ ମାଂସ ଖାଆନ୍ତି । ମୋହନ ସେଠାରେ ନଷ୍ଟ ହୋଇଯିବ ବୋଲି ସେ ଭୟ କରୁଛନ୍ତି ।

ବନ୍ଧୁ—(ହସି) ମୋହନର ପ୍ରକୃତି କ'ଣ କାହାକୁ ଅଜଣା ଅଛି ? ସେ ଯାହା ପ୍ରତିଜ୍ଞା କରିବ । ନିଶ୍ଚେ ପାଳନ କରିବ । ତାକୁ ଡାକି ଥରେ ଏକଥା ପଚାରିବା ବୋଲି ମୁଁ ଭାବୁଛି ।

ଭାଇ—ଭଲ କଥା—ଆଚ୍ଛା, ମୁଁ ଡାକୁଛି, (ଡାକିଲେ) ମୋହନ ! ମୋହନ !

ଗାନ୍ଧୀ—(ଅନ୍ତରାଳରୁ) ଆଜ୍ଞା !

ଭାଇ—ଶୁଣିଯା' ।

(ଗାନ୍ଧୀ ପ୍ରବେଶ କରି ଗୋଟିଏ କଡ଼ରେ ଠିଆହେଲେ, ଆଗେ ଭଦ୍ର ଲୋକଙ୍କୁ ପ୍ରଣାମ କରି ଓ ପଛେ ଭାଇଙ୍କୁ ପ୍ରଣାମ କରି ।)

ବନ୍ଧୁ—ମୋହନ ! କଅଣ ତୁମର ବିଲାତଯାଇ ବାରିଷ୍ଟରୀ ପଢ଼ିବାର ଇଚ୍ଛା ଅଛି ?

ଗାନ୍ଧୀ—ଆପଣମାନେ ଯାହା ଆଜ୍ଞାଦେବେ । ମୋର ତ ଇଚ୍ଛା ଅଛି ।

ବନ୍ଧୁ—ପଇସାଖର୍ଚ୍ଚ ଅବଶ୍ୟ ଭାଇ ଯୋଗାଇ ଦେବେ, କିନ୍ତୁ ତୁମକୁ କେତୋଟି କଥା ମାନିବାକୁ ହେବ ।

ଗାନ୍ଧୀ—ଆଜ୍ଞା କରନ୍ତୁ ।

ବନ୍ଧୁ—ତୁମେ ବିଲାତରେ ମଦ, ମାଂସ ଖାଇବ ନାହିଁ । ଆଉ ଭାରତର ପରମ୍ପରା ଅନୁଯାୟୀ ପବିତ୍ର, ସରଳ ଭାବରେ ଜୀବନଯାପନ କରିବ ।

ଗାନ୍ଧୀ—ଆଜ୍ଞା, ସେହିପରି କରିବ ।

ବନ୍ଧୁ—ତାହାର ପ୍ରମାଣ କଅଣ ?

ଗାନ୍ଧୀ—ମୁଁ ଏଥିପାଇଁ ପ୍ରତିଜ୍ଞା କରିବ ।

ଭାଇ—ମୋହନ, ମୁଁ ଜାଣେ ତୁ' ନିଜ ପ୍ରତିଜ୍ଞାର ମୂଲ୍ୟ ବୁଝୁ ଓ ରଖୁ । କେବେହେଲେ ସେଥିରୁ ଟଳିବୁ ନାହିଁ । ତୋ' କଥା ଶୁଣି ମୁଁ ବଡ଼ ଖୁସିହେଲି । ଚାଲ, ମାଆଙ୍କ ଆଗେ ସବୁକଥା କହିବୁ । ଆଉ ତୋ' ବିଲାତ ଯିବାର ବନ୍ଦୋବସ୍ତ ଶୀଘ୍ର କରାଯାଉଛି ।

(ସମସ୍ତେ ଉଠିଲେ)

ଘୋଷକ—(ଗାନ୍ଧିଜୀ ତାଙ୍କ ପ୍ରତିଜ୍ଞା ରକ୍ଷାକରି ବିଲାତରେ ବାରିଷ୍ଟରୀ ପାଶ୍ କରି ଭାରତକୁ ଫେରି ଆସିଲେ । ରାଜକୋଟଠାରେ ସେ ବାରିଷ୍ଟରୀ କରୁଥିବା ବେଳେ ଗୋଟିଏ ମକଦ୍ଦମା ଚଳାଇବାକୁ ଦକ୍ଷିଣ ଆଫ୍ରିକା ଗଲେ । ସେତେବେଳେ ଦକ୍ଷିଣ ଆଫ୍ରିକାରେ କଳା, ଗୋରା ସମ୍ପର୍କ ନେଇ ତୁମୁଳ ଆନ୍ଦୋଳନ ଚାଲିଥାଏ । ଗାନ୍ଧିଜୀଙ୍କୁ କଳାଲୋକଙ୍କ ସପକ୍ଷରେ ଓକିଲାତି କରିବାକୁ ପଡ଼ିଲା । ମକଦ୍ଦମା

ଶେଷପରେ ସେ ପୁଣି ଭାରତକୁ ଫେରି ଆସିବାକୁ ବାଧ୍ୟହେଲେ । ଏହା ଶୁଣି ଦକ୍ଷିଣ ଆଫ୍ରିକାର ଡରବାନ୍ ସହରରେ ବାସ କରୁଥିବା କେତେକ ଭାରତୀୟ କଥାବାର୍ତ୍ତା ହେଉଥିଲେ)—

———

## ତୃତୀୟ ଦୃଶ୍ୟ—ପଥନକଟ ।

ପ୍ରଥମ—ଶୁଣିଲଣି ନାଁ ? ଗୋଟିଏ ଦୁଃସମ୍ବାଦ ।

**୨ୟ**—ଦୁଃସମ୍ବାଦ ! କଅଣ ?

ପ୍ରଥମ—ଏଇ ଦିନେ ଦୁଇଦିନ ଭିତରେ ଗାନ୍ଧିଜୀ ଭାରତ ଫେରିଯିବେ ।

୨ୟ—ତେବେ ତ ଭାଇ, ଆମର ସବୁ ଆଶା ଭରସା ବୁଡ଼ିଯିବ । ଏଠା ସରକାରଙ୍କର ଆମ ଭାରତୀୟମାନଙ୍କ ପ୍ରତି ଯେଉଁ ବ୍ୟବହାର, ସେଥିରେ ମାନବିକତା ରକ୍ଷାକରି ଚଳିବା ତ ଅସମ୍ଭବ ହୋଇ ପଡ଼ିଥିଲା । ଆଶା କରିଥିଲେଁ ଗାନ୍ଧିଜୀ ଆମଙ୍କ ପାଇଁ ଆମର ଗୋଟାଏ ବାଟ ଫିଟାଇ ଦେବେ । କିନ୍ତୁ ତାଙ୍କ ଚାଲିଯିବା ସମ୍ବାଦ ମୁଣ୍ଡରେ ବଜ୍ରପାତ ହେବା ପରି ଜାଣୁଛି ।

ତୃତୀୟ—ସେଇ ଏକ ଗୋଟାଏ ଲୋକ ଯେ କି ଏଠା ସର୍କାରଙ୍କ ଅନ୍ୟାୟକାର୍ଯ୍ୟ ବିରୁଦ୍ଧରେ ଲଢ଼ୁଥିଲେ । ସେଦିନ ଦେଖିଲ ନାହିଁ ଭାଇ, ପ୍ରଥମ ଶ୍ରେଣୀ ରେଳ ଡବାରୁ ଉଠିଯିବାକୁ ତାଙ୍କୁ ପୁଲିସ୍‌ମାନେ ଧମକ ଦେଲେ । କିନ୍ତୁ ସେ ନ ଉଠିବାରୁ ତାଙ୍କୁ ଜବରଦସ୍ତି ଓହ୍ଲାଇ ଯିବାକୁ କହିଲେ । ଶେଷରେ ସେ ରେଳଡବାରୁ ଓହ୍ଲାଇ ପଡ଼ି ସେଇ ଷ୍ଟେସନରେ ରହିଲେ ପଛେ, ତଳ ଡବାକୁ ଗଲେ ନାହିଁ ।

ପ୍ରଥମ—ହଁ, ସେ କଥା କିଏ ନଜାଣିଛି ? ଶେଷରେ ତାଙ୍କୁ ପ୍ରଥମ ଶ୍ରେଣୀରେ ଯିବାକୁ ଦେଲେ, ତେବେ ଯାଇ ହେଲା । ଭାରତର ଟେକ ରଖିବା ପାଇଁ ସେ ଜୀବନ ଦେବାକୁ ମଧ୍ୟ ପ୍ରସ୍ତୁତ ।

୨ୟ—ଦେଖନ୍ତୁ, ଏଠା ଇଂରେଜମାନେ କେମିତି ଭୟ କରୁଥାଇଥିଲେ କେଇଟା ଦିନ ଭିତରେ । ସେ ଚାଲିଗଲେ ଆମର ଯେଉଁ ଦୁର୍ଦ୍ଦଶାକୁ—ସେଇ ଦୁର୍ଦ୍ଦଶା ।

ପ୍ରଥମ—ହଁ, ତାଙ୍କଭଳି ନିର୍ଭୀକ, ସ୍ପଷ୍ଟବାଦୀ ଲୋକ ବିରଳ । ଏତେବେଳେ ଆଫ୍ରିକାରୁ ତାଙ୍କୁ ଛାଡ଼ିଲେ ଆଉ ଆମ ଭାରତୀୟଙ୍କ ଅବସ୍ଥା ବଦଳିବା ଆଶା ନାହିଁ ।

ତୃତୀୟ—କାଲି ଗୋଟାଏ ସଭା ଡକାଅ । ସମସ୍ତେ ପ୍ରସ୍ତାବ କରି ଗାନ୍ଧିଜୀଙ୍କୁ ଆଉ କିଛି କାଳ ଏଠାରେ ରହିବାକୁ ଅନୁରୋଧ କରାଯାଉ ।

ସମସ୍ତେ—ନିଶ୍ଚୟ, ନିଶ୍ଚୟ, । ତାହାହିଁ କରିବାକୁ ହେବ ।

୨ୟ—କାଲି କାହିଁକି ଭାଇ ? ଆଜି, ଆଜି ଚାଲ । ସଙ୍ଗେ ସଙ୍ଗେ ସମସ୍ତଙ୍କୁ ଖବର ଦେଇ ଏହାର ନିଷ୍ପତ୍ତି କରିବା । ଏ ଅସମୟରେ କଦାପି ତାଙ୍କୁ ଆମେ ଛାଡ଼ିଦେବୁ ନାହିଁ, ଚାଲ ।

( ସମସ୍ତେ ଚାଲିଗଲେ )

**ଘୋଷକ**—( ପ୍ରବାସୀ ଭାରତୀୟମାନଙ୍କ ଅନୁରୋଧ ଏଡ଼ି ନପାରି ତାଙ୍କ ଦୁର୍ଦ୍ଦଶାର ଭାଗନେଇ ଗାନ୍ଧିଜୀ ପୁଣି କେତେକ ବର୍ଷ ଆଫ୍ରିକାରେ ଅତିବାହିତ କଲେ ।

ଅତ୍ୟାଚାର ଅନ୍ୟାୟ ବିରୁଦ୍ଧରେ ଗୋରା ସରକାରଙ୍କ ସହ ଆଲୋଚନା ଓ ତୀବ୍ର ସଂଗ୍ରାମରେ ଆଫ୍ରିକା ବାସୀଙ୍କୁ ଚମତ୍କୃତ କରି ପକାଇଲେ । ହିଂସାକୁ ସରକାର ଗାନ୍ଧିଜୀଙ୍କ ଏପରି କାର୍ଯ୍ୟ ସହି ନପାରି ତାଙ୍କୁ କାରାରୁଦ୍ଧ କଲେ । ଶେଷରେ ତାଙ୍କ ଅଟଳ ପ୍ରତିଜ୍ଞା ଫଳେ ଗୋରା ସରକାର ହାରି ମାନିଲେ ଓ ଗାନ୍ଧିଜୀ ଜୟଯୁକ୍ତ ହେଲେ । ତା'ପରେ ସ୍ୱଦେଶକୁ ଫେରି ଆସି ସତ୍ୟ, ଅହିଂସା,


Digitised by srujanika@gmail.com

ତ୍ୟାଗ ଓ ସେବା ଧର୍ମର ପୀଠସ୍ଥଳୀ ରୂପେ ଅହମଦବାଦଠାରେ ସେ ସତ୍ୟାଗ୍ରହ ଆଶ୍ରମ ଗଢ଼ିଲେ । ଦିନେ ସେ କେତେକ ଆଶ୍ରମ ବାସୀଙ୍କୁ ଡାକି କହିଲେ )—

---

## ଚତୁର୍ଥ ଦୃଶ୍ୟ—ଆଶ୍ରମ ।

ଗାନ୍ଧୀ—ବନ୍ଧୁଗଣ ! ମୁଁ ଆଜି ମୋର ପ୍ରିୟ ଆଶ୍ରମ ତ୍ୟାଗକରି ଯିବାକୁ ସ୍ଥିର କରିଛି ।

ଜଣେ ଆଶ୍ରମବାସୀ—( ଆଶ୍ଚର୍ଯ୍ୟ ହୋଇ ) କାହିଁକି ? କାହିଁକି ଆଶ୍ରମ ତ୍ୟାଗ କରିବେ ? ଆମ୍ଭମାନଙ୍କର କି ଅପରାଧ ହେଲା—କୁହନ୍ତୁ । କିଏ କି ଅନ୍ୟାୟ କଲା ?

ଗାନ୍ଧୀ—ନାଁ, ନାଁ, ଅନ୍ୟାୟ ତୁମେମାନେ କରିନାହଁ, କରିଛି ଇଂରେଜ ସର୍କାର । ଦେଖୁନାହଁ, ଦେଶର ଅବସ୍ଥା କଅଣ ? ଆମର ଦରିଦ୍ର ଭାଇ ଭୋକରେ ମରିବେ, ଆଉ ଦରିଆ ପାରିରେ ସେମାନେ ଧନୀ ହେବେ—ମଉଜରେ ରହିବେ । ତାଙ୍କର ଏ ଅନ୍ୟାୟ ବିରୁଦ୍ଧରେ ମୁଣ୍ଡଟେକି ପଦେ କଥା କହିବାକୁ ଆମର ବଳ ନାହିଁ । ତୁମେମାନେ କଅଣ ଏସବୁ ଅନୁଭବ କରିପାରୁ ନାହଁ ?

ଅନ୍ୟଜଣେ—ଖାଲି ଅନୁଭବ ନୁହେଁ, ଅତ୍ୟାଚାରର ସହି ସହି ଦେଶ ରସାତଳକୁ ଗଲାଣି, ସୁନାର ଭାରତ ଆଜି ଧୂଳି ମାଟିରୁ ହୀନ ହୋଇ ପଡ଼ିଛି । କିନ୍ତୁ ଉପାୟ କଅଣ ଗାନ୍ଧିଜୀ ? ଆମେ ଶାସିତ—ପରାଧୀନ । ଆପଣ କର୍ତ୍ତବ୍ୟ ନିର୍ଦ୍ଦେଶ କରନ୍ତୁ ।

ଗାନ୍ଧୀ—ଏ ଅନ୍ୟାୟ ବିରୁଦ୍ଧରେ ଯୁଦ୍ଧ କରିବାକୁ ହେବ । ମରିବାକୁ ହେଲେ ମନୁଷ୍ୟ ପରି ମରିବାକୁ ହେବ, ଖାଲି ଭଲ ପଦାର୍ଥ ଖାଇଥାଇ ମରିବାଠାରୁ ବୀରର ମରଣ ବରଣ କରିବାକୁ କୁଣ୍ଠିତ କାହିଁକି ?

ଅନ୍ୟଜଣେ—କିନ୍ତୁ, ଇଂରେଜ ଯେ ଏକଛତ୍ରାଧିପତି ଶାସକ, ବଳବାନ୍, ତା'ର ଧନବଳ ଅଛି, ସୈନ୍ୟବଳ ଅଛି। ଗୋଳା ବନ୍ଧୁକରେ ସେ ଡରାଇ ରଖିଛି। ଆମେ ଦୁର୍ବଳ, ଆମର ଏକତା ଅଭାବ।

ଗାନ୍ଧୀ—କିଏ କହେ ଆମେ ଦୁର୍ବଳ ? ସବୁଠାରୁ ବଡ଼ ଅସ୍ତ୍ର—ଆମ ହାତରେ ଅଛି। ସେ ହେଉଛି, "ଅହିଂସା"—ସତ୍ୟାଗ୍ରହ, ତ୍ୟାଗ। ତୁମେମାନେ ଠିକିଏ ଭାବିଲେ ବୁଝିପାରିବ ଯେ, ଗୁଳି ଗୋଳା ବା ବନ୍ଧୁକ କେବଳ ଭୀରୁର ଜୀବନ ରକ୍ଷାର ଆଶ୍ରୟ। ଆମେ ଆମର ନ୍ୟାଯ୍ୟ ଅଧିକାର ଦାବି କରିବା ଅନ୍ୟାୟ ନୁହେଁ। ଚରଖା ଆମର ସୁଦର୍ଶନ ଚକ୍ର—ଦରିଦ୍ରନାରାୟଣର ଅମୋଘ ଅସ୍ତ୍ର। ମୁଁ ଅନ୍ୟାୟ ବିରୁଦ୍ଧରେ, ଅତ୍ୟାଚାର ବିରୁଦ୍ଧରେ ସତ୍ୟାଗ୍ରହ ଯୁଦ୍ଧ ଚଳାଇବାକୁ ଚାହୁଁଛି। କ'ଣ କହୁଛ ?

ଜଣେ—ଆପଣ ଯେ ଯୁଦ୍ଧର ସେନାପତି, ଆମେମାନେ ସେନାରୂପେ ପ୍ରାଣପଣେ ଲଢ଼ିବାକୁ ପ୍ରସ୍ତୁତ ଅଛୁଁ। ଆଦେଶ କରନ୍ତୁ, କଅଣ କରିବାକୁ ହେବ।

ଗାନ୍ଧୀ—କିନ୍ତୁ ଏ ବଡ଼ କଠିନ ଯୁଦ୍ଧ, ରକ୍ତ-ମୁଖା ସିଂହ ମୁଖରୁ ଆହାର କାଢ଼ିନେବା ସହଜ ନୁହେଁ। ରକ୍ତ ବଦଳରେ ରକ୍ତ ମୋର ନୀତି ନୁହେଁ। ହିଂସା ବଦଳରେ ଅହିଂସା—ମୋର ନୀତି। ଏଥିଲାଗି କଠୋର ତ୍ୟାଗ ଆବଶ୍ୟକ। ଏ ଯୁଦ୍ଧ ଅତି ଭୀଷଣ। ଆମକୁ ସହିବାକୁ ହେବ ଅମାନୁଷିକ ଅତ୍ୟାଚାର, ପୀଡ଼ନ, କାରାବାସ। ହସି ହସି ଫାଶୀଖୁଣ୍ଟକୁ ବରଣ କରି ନେବାକୁ ହେବ। ସବୁବେଳେ ପ୍ରଲୋଭନଠାରୁ ଦୂରରେ ରହି ସାହସର ସହିତ ଗୁଳିକୁ ଛାତି ପତାଇ ଦେବାକୁ ହେବ। ଏ ତ୍ୟାଗ, ଏ ଶକ୍ତି, ଏ ଦୃଢ଼ତା-ଆପଣ ମାନଙ୍କର ଅଛି ?

ସମସ୍ତେ—ନିଶ୍ଚୟ ଅଛି।

ଗାନ୍ଧୀ—ତେବେ ପ୍ରତିଜ୍ଞା କର, ଭାରତ ମୁକ୍ତ ନ ହେବା ପର୍ଯ୍ୟନ୍ତ, ଅତ୍ୟାଚାରୀ, ଲୁଣ୍ଠକ ଦେଶ ତ୍ୟାଗ ନ କରିବା ପର୍ଯ୍ୟନ୍ତ ଆଉ ଏ ଆଶ୍ରମକୁ ଫେରିବା ନାହିଁ । ଜୟ ବା ମରଣ—ଦୁଇଟିରୁ ଗୋଟିକୁ ହସି ହସି ବରିନେବାକୁ ପ୍ରତିଜ୍ଞା କର ବନ୍ଧୁଗଣ !

ସମସ୍ତେ—"ଜୟ ଭାରତ ମାତା କ ଜୟ ।"
"ଜୟ ଗାନ୍ଧିଜୀ କ ଜୟ ।"

ଗାନ୍ଧୀ—ତେବେ ଆସ, ଆଜି ଏହି ମୁହୂର୍ତ୍ତରେ ଆମେ ଅହିଂସା ଅଭିଯାନ ଆରମ୍ଭ କରିଦେବା, ସ୍ୱଦେଶୀ ବର୍ଜନ ଲାଗି ସମସ୍ତେ ପଣକର, ଘରଆଡ଼େ ସ୍ୱଦେଶୀ ବର୍ଜନ ଲାଗି ପ୍ରଚାର କର । ପ୍ରଥମେ ଲୁଣ ଉପରେ ଆମର ଅଧିକାର ସାବ୍ୟସ୍ତ କରିବାକୁ ହେବ ।

ଜଣେ—ଜାତିର ପିତା ରୂପେ ଆପଣ ତ୍ୟାଗ ଓ ଅହିଂସାର ମଶାଲ ଜାଳି ଯେଉଁ ପଥ ଦେଖାଇବେ, ଆମ୍ଭେମାନେ ସେହିପଥ ଅନୁସରଣ କରିବୁଁ ।

ଗାନ୍ଧୀ—ତେବେ ଆଉ ବିଳମ୍ବ କାହିଁକି ? ଯୁଦ୍ଧ ଲାଗି ପ୍ରସ୍ତୁତ ହୁଅ । ଆଶ୍ରମ ତ୍ୟାଗକର । ଚାଲ, ଜାତି ମୁକ୍ତ ହେଉ, ଅତ୍ୟାଚାରୀ ଧ୍ୱଂସ ହେଉ, ଭାରତ ସ୍ୱାଧୀନ ହେଉ—ଏଇ ଆମର ଦାବୀ, ଏଇ ଆମର ଲକ୍ଷ୍ୟ—ଏଇ ଆମର କର୍ତ୍ତବ୍ୟ ।

(ଆଗରେ ଚାଲିଲେ—କରତାଳି ଘନ ଘନ ଶୁଭିଲା ।)

ସମସ୍ତେ—"ଜୟ ଭାରତ ମାତା କ ଜୟ ।"
ଜୟ ସତ୍ୟାଗ୍ରହୀ ଗାନ୍ଧିଜୀ କ ଜୟ ।"
(କହି କହି ଗାନ୍ଧିଜୀଙ୍କ ପଛେ ପଛେ ଗଲେ)

———

ଘୋଷକ—(ଗାନ୍ଧିଜୀଙ୍କ ନିର୍ଦ୍ଦିଷ୍ଟ ତ୍ୟାଗ ଓ ଅହିଂସା ସମର ସଫଳ ହୋଇଛି—ଭାରତ ବର୍ତ୍ତମାନ ବନ୍ଧନ ମୁକ୍ତ । ଦିଲ୍ଲୀର ପ୍ରାର୍ଥନା ମଣ୍ଡ ପରେ ସଗର୍ବେ ଉଡ଼ୁଛି ସ୍ୱାଧୀନ ଜାତିର ତ୍ରିରଙ୍ଗ ପତାକା । ବହୁ ନର ନାରୀ ଗାନ୍ଧିଜୀଙ୍କର ଆଗମନକୁ ଉତ୍କଣ୍ଠାର ସହ ଅପେକ୍ଷା କରି, ବସିଛନ୍ତି, ଅଦୂରେ ଗାନ୍ଧିଜୀ ଆସୁଥିବା ଦେଖି ରାମଧୂନ ଆରମ୍ଭ କରାହୋଇଛି । ଗାନ୍ଧିଜୀ ପାର୍ଥନା ମଣ୍ଡପକୁ ଉଠି ଆସୁଛନ୍ତି ଏତିକି ବେଳେ ହଠାତ୍ ବନ୍ଧୁକର ଶବ୍ଦ ଶୁଭିଲା, ରାମଧୂନ ବନ୍ଦ ହୋଇଗଲା, ଲୋକେ ଉଠି ପଡ଼ିଲେ । ଗୁରୁଆଡ଼ୁ ଶୁଭିଲା—"ଧର, ଧର, ହତ୍ୟାକାରୀକୁ ଜୀବନରେ ମାରନିଅ)" ।

———

## ପଞ୍ଚମ ଦୃଶ୍ୟ—ପ୍ରାର୍ଥନା-ମଣ୍ଡପ ।

ଗାନ୍ଧିଜୀ—ଓଃ, (ଟଳି ପଡ଼ିଲେ—ଆତତାୟୀ ଜନ ଗହଳରେ ପଳାଇ ଯିବାକୁ ଉଦ୍ୟତ ହେଉଥିବା ବେଳେ ଉତ୍ୟକ୍ତ ଜନତା ତାକୁ ମାଡ଼ି ବସିଲେ—ଗାନ୍ଧିଜୀ କ୍ଷୀଣ ସ୍ୱରରେ କହିଲେ)—

ଆତତାୟୀକୁ କ୍ଷମାକର ରାମ !
"ରଘୁପତି ରାଘବ ରାଜାରାମ
ପତିତପାବନ ସୀତା ରାମ ।

× × ×

ସବ୍‌କୋ ସନ୍‌ମତି ଦେ ଭଗବାନ
ପତିତ ପାବନ ସୀତା ରାମ !"

(ଯବନିକା ନଇଁ ଆସିଲା)

———

# ପଞ୍ଚାୟତ

## ପ୍ରଥମଦୃଶ୍ୟ

(ବାସଗୃହ—କବାଟ ଫିଟିବା ଶବ୍ଦ )

ଗୁରେଇ ମାଉସୀ—ମଲି, ଘରଟା କିଶୂନ ଲାଗୁଚି । କେହି କଅଣ ନାହାନ୍ତି କି ଘ୍ୟାଙ୍କର ? କଏ ଅଛ କିଲୋ ! ଏ—(ଅଟକି ଗଲି କହୁ କହୁ) କଅଣ ବୋଲି ଡେଲେ ଡାକିବ ? କଅଣ କୁଆଁ ଶବଦ ଅଛି ଯେ, ଘ୍ୟା ବୋଉ କି ତା' ବୋଉ ବୋଲି ଡାକିବ ? (ବଡ଼ ପାଟିରେ) ଆଲୋ ଘ୍ୟେ···ମଲି ରେ ଆସୁନାହିଁ । ଘରେ ସବୁ କଅଣ କରୁଚ କି ? କେହି କୋଉଠି ଦିଶୁ ନାହାଁ ?

ଭିତରୁ ସାନବୋହୂ—କଏ ଡାକୁଚ ? କଅଣ ? (ଆସିଲେ)

ଗୁରେଇ—ନାହିଁ···( ଖଣ୍ଡି ହସ ହସି) ହେଁ, ହେଁ···ଘ୍ୟେ···କଅଣ ବୋଇଲି କି ଏଇ···ମୁଁ ଆସିଥିଲି, ଗୁରେଇ ମାଉସୀ । ମତେ ଚିହ୍ନି ପାରୁନା ? ହଁ, କାଇଁକି ଚିହ୍ନନ୍ତ ? ଏ ଗାଆଁ ର ତ ନୁହଁ ତେମେ ।

ସାନବୋହୂ—କାହାକୁ ଖୋଜୁଚ ? ଅପାଙ୍କୁ ? ଡାକି ଦଉଚି (ଚୁଲିଗଲା)

ଗୁରେଇ—ମାଆ ଲୋ ! କୋଉଠିକି ଯିବଟି ? ଏଇ ତେବେ ବଶିଆର ବୋହୂ ? କେଡ଼େ ଟାଣ ଟାଣ କଥା ମ ! ବାହାଘର ତ ଏଇ ମଗୁଶୀରରେ ଗଲା କି କଅଣ ! ଦୋଳ ଯାଇ ପଣା ସଂକ୍ରାନ୍ତି-ଦିନ କେଇଟା ହେଇଚି ନୂଆବୋହୂଟା ! ବାଗ ନାଇଁ କି ଖାଗ ନାଇଁ ! ଓଲଗିଟେ ହବାକୁ ନାଇଁ, ମାଇକି ଧରମ କୁଆଡ଼େ ବୁଡ଼ିଗଲା ଘ୍ୟେ କଳିକାଳକୁ !

ବଡ଼ବୋହୂ—(ପହଞ୍ଚିଲେ) କିଏ, ଗୁରେଇ ମାଉସୀ ଆସିଚ କି ?

ଗୁରେଇ—ହଁ ଲୋ ବୋହୂ । ତମ ଘରକୁ ଟିକିଏ ଆଇଥିଲି ଯେ—

ବଡ଼ବୋହୂ—ଆସ, ଆସ । ଓଳଗୀ ହଉଚି (ଓଳଗୀ ହେଲା)

ଗୁରେଇ—ଅଇସୁଲକ୍ଷଣୀ ହେଇଥାଆ ଲୋ ବୋହୂ ! ହାତ କାଚ ବଜର ହଉ । ମଥାର ସିନ୍ଦୂର ଟେପା ଧାଇଯାଁ ହଉ ।

(ବଡ଼ବୋହୂ ଘରଭିତରକୁ ଯାଇ ଖପ ଆଣି ପାରିଦେଲେ)

ବଡ଼ବୋହୂ—ବସ, କୁଆଡ଼େ ଏମିତି ବହୁତ ଦିନକେ ତ ଆସିଲ ! ବିଶ୍ବନାଥଙ୍କ ବାହାଘରକୁ ଖୋଜିଲି ଯେ, ଗାଆଁରେ ତ ନଥିଲ ମାଉସୀ ? (ଗୁରେଇ ମାଉସୀ ବସିଲେ)

ଗୁରେଇ—ଆଉ ଏ ଗାଆଁରେ କିଏ ଅଛି ଯେ ? ମୋର କଅଣ ପୁଅ ନାଁ ଗେରସ୍ତ ? ସବୁ ତ ଗଲେ ରାଣ୍ଡୀ ଘରେ ଖଣ୍ଡି ପଇ କେତେ ପଡ଼ିରହନ୍ତୁ ଆଉ ? କାଳିଆ ପାଖକୁ ପୁରସ୍ତମ ଯାଇ-ଥିଲି । ଆଇଲି ବାହାରି ଟିକିଏ । ଯେତେହେଲେ ତ ଗାଆଁ ଭୂଇଁ । ମାୟା ତ ଛୁଟିନାହିଁ । ମନଟା ଗୁରେଇ ଗୁରେଇ ହେଲା ।

ବଡ଼ବୋହୂ—ଭଲ କଲ ମାଉସୀ । କୋଉଦିନୁ ଦେଖି ନ ଥିଲି ।

ଗୁରେଇ—ଦେଲୁ ଦେଲୁ । ତୋ ହାତ ପାନ ଟିଇକ ସବୁବେଳେ ମୋର ମନେ ପଡ଼େ ।

ବଡ଼ବୋହୂ—ସାନବୋହୂ ଆଣୁଚି ।

ଗୁରେଇ—ସେଇ ଏବେ ସାନବୋହୂ ? କି ସୁନ୍ଦର ପିଲାଟିଏ ତ ! ବାପ ଘର କୋଉଠି ?

ବଡ଼ବୋହୂ—ନଳଙ୍ଗ ପାଟଣା ।

ଗୁରେଇ—ଓହୋଃ ! କଟକ ତଳି । ହଁ, ସେଇଥିକି ତେବେ—

ବଡ଼ବୋହୂ—କଅଣ ହେଲା କି ?


Digitised by srujanika@gmail.com

ଗୁରେଇ—ନାଇଁ, କିଛି ନାଇଁ ଯେ । ଏବକୁ ତ ସବୁ ସେଇମିତ କୁଆଡ଼େ ଉଭେଇ ଗଲାଣି । ଆଉ ମାଇନ ଥାଇନ କାଇଁକି ଥାଆନ୍ତା ?

ବଡ଼ବୋହୂ—ସେ ତମକୁ ଚିହ୍ନି ନାଇଁ ଗୁରେଇ ମାଉସୀ କେଉଁଠେ ! ଘର ବୋହୂ ତମେ । ଗେରସ୍ତ ଗଲେ । ଗୃହ୍ଣୁ ଗୃହ୍ଣୁ ଆଖି ଆଗରେ ଶାଳଗଜା ପରି ଭେଣ୍ଡା ପିଲା ଦି'ଟା—

ଗୁରେଇ—ଗୁଡ଼ ଲୋ ବୋହୂ···ସବୁ ତ ପୋଡ଼ିଯାଇଚ, ଆଉ କାହିଁକି ସେ ସବୁ ? ନଇଲେ ମୁଁ ଫେର୍ ମନଷ—ସଦେଇଙ୍କ ମୂଳ ଉପ୍ତ ଖଣ୍ଡକ···(କାନ୍ଦ ଉଠିଲା)

ବଡ଼ବୋହୂ—ତମେ ଭୁନହ' ମାଉସୀ ! କଥାରେ ତ ଅଛି, "ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି"—ଗୁଡ଼ ମାଉସୀ ! କୋଉଦିନ ଆଇଲ କହ । ଗୁରି ରଥ ସୁଖ ଥେଲେ ସେଇ ଢେ଼ର ।

ଗୁରେଇ—ଏଇ ପଅରଦିନ ତ ଆଇଲି ଲୋ ବୋହୂ !

ବଡ଼ବୋହୂ—କୋଉଠି ଅଛ ?

ଗୁରେଇ—ଆଉ ବାସ ବୋଲି ତ କୋଉଠି ନାହିଁ । ସେଇ ପୁଭୁଗା ଘରେ—

ବଡ଼ବୋହୂ—ହଁ, ତାଙ୍କର ଅଭାବ କଅଣ ? ଗାଆଁ ଜମିଦାର ସେ ।

ଗୁରେଇ—ସେଇ ତ ଜାଣି ହଇବାକ ରଖିଚି । ନଇଲେ ଏ ହାଡ଼ ଗୁରିଖଣ୍ଡ କୋଉକାଳୁ କାଉ ଶାଗୁଣା ଖାଆନ୍ତେଣି ।

ବଡ଼ବୋହୂ—ଆଣ ଲୋ ସାନବୋହୂ ! ପାନ ଆଣ । ଏଇଠିକି ଆଣୁନାଉଁ ? ସେ ପରା ଆମ ଗାଆଁର ଗୁରେଇ ମାଉଷୀ । ଆ ! ଓଳଗି ହ ।

(ସାନବୋହୂ ପାନ ନେଇ ଆସିଲେ, ଓଳଗି ହେଲେ)

ଗୁରେଇ—ହଉ, ଥାଉ ଥାଉ, ହେଲା ଯେ, ଯୁଗ ରାଇଜ କର ଲୋ ମାଆ, ପିଲା ବାଳକ ନେଇ ଘର କର । (ଦୀର୍ଘ ନିଃଶ୍ୱାସ ମାରି) ହଁ, ବଡ଼ବୋହୂ ଆସିବାର ତ କେଜାଣି ୮।୯ ବର୍ଷ ହେଇଗଲା, ଘରେ କୁଆଁ ଶବଦ ଶୁଭିଲା ନାଇଁ । ତୁ ହେଲେ—

ବଡ଼ବୋହୂ—ହଁ, ମୋର ସେଥିକି ଚିନ୍ତା ନାହିଁ ମାଉଷୀ ! ବିଶ୍ୱନାଥ ଅଛନ୍ତି । ସେଇ ମୋର ସବୁ । ପିଲାଟି ହେବାରୁ ମାଆ ଛେଉଣ୍ଡ ସେ । ତାଙ୍କୁଇ ମଣିଷ କରୁଛି—ପାଳିଚି ପୋଷିଚି । ଆଉ କଅଣ ମୁହଁରେ ନିଆଁ ମୁଠେ ଦେବେ ନାହିଁ ସେ ? ବିଶୁ ମୋର ହେଅର ନୁହେଁ ଯେ—ପୁଅ । ହଁ, ପାନ ଖାଇଲ ନାହିଁ କି ମାଉସୀ ?

ଗୁରେଇ—ହଁ, ଖାଉଚି । ଟିକିଏ ଚୂନାଚୂନା କରି ଗୁଆ ଦେଇଚୁ ଲୋ ବୋହ !

ସାନବୋହୂ—ହଁ, ସରୁ ଗୁଆ ଦେଇଚି ।

ଗୁରେଇ—ବସ ଲୋ ବୋହୂ ! ବସୁନୁ—ଆ । (ପାନ ନେଲେ)

ସାନବୋହୂ—ନାହିଁ । ଚୂଲିରେ ନାଗୁଆଣୀ ଦେଇ ଆଇଚି, ହେଖଣ୍ଟେ କଅଣ ଭଜା ଭଜି କରିଦେବି । ଏଇନେ ତ ସାଆନ୍ତ ଆସିବେ, ଘରେ ବାଳି ଯିବଣି କି କ'ଣ ? ବସିବାକୁ ଡର କାହିଁ ଏଇନେ ? ଅପା ତ ଅଛନ୍ତି ।

ବଡ଼ବୋହୂ—ହଉ ଚସ ଯାଉ । (ସାନବୋହୂ ଗୃଲିଗଲେ)

ଗୁରେଇ—ଅଲୋ, ଏବେ ପରା ମାସ କେଇଟା ହବ ବାହାଘର ? କଥା-ଭାଷା, ଗୃଲିଚଳଣି କି ଚୋସ୍‌ଠାସ୍ ମ ! ଆମ କାଳକୁ ଏବ କାଳ କେତେ ଗୁଡ଼ିଗଲା ଲୋ ବୋହୂ ? (ପାନ ମକଚି ଖାଇଲେ)

ବଡ଼ବୋହୂ—ନାହିଁ ମାଉଷୀ । ସାନବୋହୂ ସେମିତେ ଉପୁଡ଼ାଙ୍କରିଆ ନୁହେଁ । ପାଠଶାଠ ପଢ଼ିଚି । ଥିଲାଘର ପିଲା, ହେଲେ ସଗୁଣା ଜାଣିଛି ।

ଗୁରେଇ—ସତ ଯେ, ଆମେ ସବୁ ହାତେ ଓଢ଼ଣା ପକେଇ ଚୁଁ,ଚୁଁ କରୁଥିଲୁଁ । ଏବେ କଥାବାର୍ତ୍ତା କି ଚୋସ୍, ଦେଖ । ଯେତେହେଲେ କାଳ ପରା କଳ ! ଓଃ, ଗୁଣ୍ଡି ଗୁରା ଉଜଙ୍କୁ ପକେଇ ଦେଇଚି ଲୋ ବୋହୂ ! ପିକ କୋଉଠି ପକେଇବି ?

ବଡ଼ବୋହୂ—ସେଇ ପହଣ୍ଡ ତଳକୁ ପକେଇ ଦିଅ ।

ଗୁରେଇ—ସାନବୋହୂ ପାନ ଗୁରିଖଣ୍ଡ ଦେଲା ସତ, ହେଲେ ତୋ ହାତ-ନାଖି ହେଲା ନାଇଁ ।

ବଡ଼ବୋହୂ—ମୁଁ ଆଣି ଦଉଚ, ବସ ।

ଗୁରେଇ—ଥାଉ ଥାଉ । କେତେ ଉଠିବୁ ? ଖାଇଲଣି ତ ।

ବଡ଼ବୋହୂ—ନାଇଁ, କେତେ ଘଡ଼ି ନାଗିବ ଯେ ? ଟିକିଏ ବସ, ମୁଁ ଆଣି ଦଉଚ । (ଚାଲିଗଲେ)

ସଦାନନ୍ଦ—(ବାହାରୁ ଡାକିଲେ)—କୁଆଡ଼େ ଗଲ କି ?

(ଡାକୁ ଡାକୁ ଆସିଲେ)

ସଦାନନ୍ଦ—ଆରେ ! ଗୁରେଇ ମାଉସୀ ! କୋଉଦିନ ଆସିଲ ? କୁହାର ହଉଚ ।

ଗୁରେଇ—ବୁଢ଼ା ହେଇଥା' ବାପା ! ପଅରଦିନ ରାତିରେ ତ ଅଇଲି ।

ସଦାନନ୍ଦ—ଆଉ ସବୁ ଭଲ ?

ଗୁରେଇ—ହଁ ରେ ସଦେଇ, ପୋଡ଼ଗଲା ଭୁଇଁରେ ଆଉ କି ସୁଆଦ ଖୋଜୁଚୁ ? ଆମର ଗାତକୁ ଗଲେ ଯାଇଁ ଭଲ ।

ସଦାନନ୍ଦ—ନାଇଁ, ଦିହ ପାଆ—

ଗୁରେଇ—ପୋଡ଼ଯାଉ ସେ ଦିହ ପାଆ । ଥାଇ ନ ଥାଇ ସମାନ । ହଁ, ହଁ, ଜାଇଚୁ, ପୋଡ଼ା ପେଟ ତ ଅଛୁ । ମୁଠେ ମୁଠେ ମିଳୁଚ । ଆଇଲାଭିତରେ ଟିକିଏ ଗାଆଁ ଗଣ୍ଡା ବୁଲି ଦେଖିଯିବ ।

ସଦାନନ୍ଦ—ଭଲ କଲ । କଅଣ ସେଇ ରଘୁବାବୁଙ୍କ ଘରେ ଅଛ ତ ?

ବଡ଼ବୋହୂ—(ଆସିଲେ) ହେଇଟି, ପାନ ।

ଗୁରେଇ—ହଁ, ଦେ ଲୋ ବୋହୂ । ତୋ ହାତ ପାନ ଅମୃତ । ହଁରେ ବାପ ସଦେଇ, ସେଇ ରଘୁ ଘରେ ତ । ସେଇ ତ ଚଳଉଚ । ପୁରୁଷମ ଦେଖା ତ ତା'ର ଯୋଗରୁ ।

ସଦାନନ୍ଦ—ହଁ, ଶେଷକୁ ଜମି ବାଡ଼ି ଯାହା ଥିଲା, ସବୁ ପରା ତାଙ୍କ ନାଆଁରେ ରେଜିଷ୍ଟ୍ରି କରି ଦେଇ ସାରିଛ ?

ଗୁରେଇ—ହଁ, କଅଣ ହାକିମ ପାଖରେ କାଗଜ କରେଇ ଦେଇଚ ତ ।

ସଦାନନ୍ଦ—ହଉ ହଉ । କଥା ହୁଅ । ମୁଁ ଲୁଗାପଟା ବଦଳି, ହାତଗୋଡ଼ ଧୋଇ ଆସୁଚି । (ଭିତରକୁ ଚାଲିଗଲେ)

ଗୁରେଇ—ବସ ଲୋ ବୋହୂ ।

(ବିଶ୍ୱନାଥଙ୍କ ପ୍ରବେଶ)

ବିଶ୍ୱନାଥ—ନୂଆବୋହୂ ! ଭାଇ ଆସିଲେଣି ? ଆରେ ବାଃ ! ଗୁରେଇ ମାଉସୀ ତ ସଶରୀରେ ଉପସ୍ଥିତ ହୋଇ ଗଲେଣି । ନମସ୍କାର, ନମସ୍କାର ।

ଗୁରେଇ—ବୁଢ଼ା ହେଇଥା ବାପା !

ବିଶ୍ୱନାଥ—କଅଣ ଭାଇଙ୍କି ସବୁ କହି ସାରିଲଣି ମାଉସୀ ?

ଗୁରେଇ—କଅଣ କରେ ?

ବିଶ୍ୱନାଥ—ଯୋଉଥି ପାଇଁ ପୁରୀରୁ ଅଣା ହେଇଚ ।

ଗୁରେଇ—କୋଉଥି ପାଇଁ ମ ? କଅଣ ଏମିତି କହୁଚୁ ?

ବିଶ୍ୱନାଥ—ସେ ନୂଆବୋହୂ ସରଳିଆ ଲୋକ ଯେ, ତାଙ୍କୁ ଭଣ୍ଡେଇବ ସିନା, ମୁଁ ପରା କଳିକାଳ ପିଲା—ପବନରେ ଫାଶ ବାନ୍ଧିବା କଥା । ସେଥିରେ ପୁଣି ଓକିଲାତି ପଢ଼ିଚି । କଅଣ ତମକୁ ସବୁ ଶିଖେଇଛି ସେ ରଘୁଆ ବଦମାସ୍ । ମୁଁ ତା ଜମିଦାରୀ ଚାଲ୍ ଛଡ଼େଇ ଦଉଚି ।

ଗୁରେଇ—ଆରେ ତାକୁ କାହିଁକି ଗାଳି ଦଉଚୁ ? ହଇରେ, ବଦମାସୀ ! ରଘୁ ପରା ପୁଅ—ଗାଆଁର ରଜା ସେ । ତୁ ଟୋକା ଟିକିଏ । ତାକୁ ଫେର୍ କହୁଚୁ ବଦମାସୀ ? ମୁଁ ତ ଗାଆଁ ଗଣ୍ଡାକୁ ଟିକିଏ ସଙ୍ଗୋଳି ପଚାରି ଆଇଲି । ମତେ ସେ ଅଣାଇଲା କଅଣ ?

ବିଶ୍ୱନାଥ—ହଉ, ହଉ । ଫଟଖୋଲା ସରିଛି ତ ? ଯାଅ । ଆଉ ଏଠି କାମ କଅଣ ?

ଗୁରେଇ—ଦେଖୁଚୁ ଲୋ ବଡ଼ବୋହୂ ! ତୋ ଆଗରେ— (କାନ୍ଦି ଉଠିଲା)

ବଡ଼ବୋହୂ—ବିଶି ? ଯେ କଅଣ ? ତେମେ ତାଙ୍କୁ ଏମିତି ସବୁ କଅଣ କହୁଚ ? ବୁଢ଼ୀ ଲୋକ । ଅପଶାଇପ ଦେବେ ।

ବିଶ୍ୱନାଥ—ଡାହାଣୀଟା । ତୁମେ ଜାଣିନା ନୂଆବୋହୂ ! ଦୋଳକୁ ଠାକୁର ଭୋଗଖିଆ ନେଇ ସେ ଯୋଉ କଳି ଲାଗି ନଥିଲା, ଜମିଦାରଙ୍କ ଠାକୁର ପାଖେ ଆମ ଠାକୁର କାହିଁକି ବସିଲେ ବୋଲି—ରଘୁ ତାଆରି ଅକସ ସାଧିବାକୁ ବୁଢ଼ୀକି ପୁରୀରୁ ଅଣେଇଚି । ମୁଁ ସବୁ ଜାଣିଚି । ଯାଃ, ଯା ଉହି କଣି ଘାଇ ତା ଉପରେ ଦେଉଛିଲା ତୋଳେଇ ନାହାନ୍ତି, ତାକୁ ବେଦଖଲ କରେଇବ ଏଇ ବୁଢ଼ୀ । ରଘୁ ସହ୍ଲା ଦେଇଚି । ଭାଇ କାହାନ୍ତି ?

ସଦାନନ୍ଦ—(ପହଞ୍ଚିଲେ) କଅଣ ରେ ବିଶି ?

ବିଶ୍ୱନାଥ—ଏଇ ଘର ଭଙ୍ଗେଇ ଗୁରେଇ ମାଉଷୀ । ଆଃ, କି ସୁନ୍ଦର ଗୁଣ ! କିଏ ତମକୁ ମାଉଷୀ ପଦଟା ଦେଇଥିଲା ? ମତେ ଲାଗୁଚି ଗୋପର କୃଷ୍ଣଚନ୍ଦ୍ରଙ୍କ ଅମଳରୁ ତୁମେ ମାଉଷୀ ହୋଇ ଆସୁଛ ।

ସଦାନନ୍ଦ—କଥା କଅଣ ରେ ?

ବିଶ୍ୱନାଥ—ପଚାରୁ ନାଁ ତାଙ୍କୁ । କୁଆଡ଼େ ଆସିଛନ୍ତି ? କଅଣ ମାଉଷୀ, ଉହି ଖଣ୍ଡି ଫେରେଇ ନବ ? କହୁନା ସତ କଥା ? ରଘୁ କଅଣ କହୁଛି ?

ଗୁରେଇ—ଆ, ସେ ମତେ କଅଣ କହିବ ମ ! ଆରେ, ମୁଁ ତ ଧୋର ଖାଇଥିଲା ତକ ଖାଇବ, ପିଇବ । ତେମେ ହଜାରେ କି ବାଉଣି ଟଙ୍କାର ସମ୍ପତ୍ତି କି ଟଙ୍କା ତିନଶ ଫୋପାଡ଼ି ଦେଇ ମାଡ଼ି ବସିଲ ! କହିଲାକୁ ଦୋଷ ହେଲା ?

ବିଶ୍ୱନାଥ—ଶୁଣିଲ ନୂଆବୋହୂ ! ପେଟ ଭିତରଯାକ ବୁଢ଼ୀର ରୁମ ଭରତି । ହଉ, ତୁମେ ଯା, ରଘୁକୁ କହିବ, ତା ବାପ ଜିଭରେ ହାଡ଼ଥିଲେ ସଦାନନ୍ଦ ଦାସଙ୍କଠୁ ଓହ ଛଡ଼େଇ ନବ । ଦେଉଳ ଭାଙ୍ଗିଦବ । ଯା, ତୁମେ ଉଠିଲ, ଯା ।

ସଦାନନ୍ଦ—ଆରେ, ରହ । କଥାଟା କଅଣ ହେଇଛି ଶୁଣିବା ।

ବିଶ୍ୱନାଥ—ସବୁ ଶୁଣାଅଛି, ମୁଁ କହିବି । ସେ ବୁଢ଼ୀ ଆଗେ ବିଦା ହଉ । କଅଣ ମାଉଷୀ, ଭଲରେ ଯିବ କି, ମୁଁ ବାଟ ଦେଖେଇ ଦେବି ?

ଗୁରେଇ—କଅଣ ହେଲା ! ହଇରେ ବିଶିଆ ! ତୋର ପୁଣି ଏଡ଼େ ବହପ ? କି ଘର ବୋହୂ, କାହାର ଝିଅ ମୁଁ ! ତୁ ମତେ ବାଟ ଦେଖେଇ ଦବୁ ? ଧରମ ସହିବ ତତେ ?

ବଡ଼ବୋହୂ—ହଁ, ହଁ, କାହିଁକି ତୁମେ ତାଙ୍କୁ ସଁପୁଛ ମାଉଷୀ । ତୁମେ ଯା ବିଶୁ, ମୁଁ ମାଉଷୀଙ୍କୁ.........

ସଦାନନ୍ଦ—ବସ, ବସ, ମୁଁ ବାଟ ବଳେଇ ଦେଇ ଆସୁଚି । କାହାରିକି ଯିବାକୁ ହବନାଇଁ । ଚାଲ ମାଉସୀ, ବିଶୁଟା ପିଲା । କଅଣ ଗୁରାଏ କହି ପକଉଚି । ତା କଥା......

ଗୁରେଇ—ପିଲା ! ଦୁଧ ଖାଉଚି ? ମୁହଁରେ ବାଡ଼ବତା ନାହିଁ ? ହଉ, ସତରେ ମୁଁ ଯେବେ ଦାମ ଦାସ ବୋହୂ ହେଇଥିବି, ରାମା, ଶାମା ମାଆ ହେଇଥିବି, ତାକୁ ହାଡ଼ହାତ କରେଇବି । ତେବେ ଯାଇଁ ମୋ ନାଆଁ ଗୁରେଇ । ଦେଖ ହୋ ! ମତେ ମାଡ଼ମାରି ତଡ଼ୁଚି !

ବିଶୀ—ଏ ବୁଢ଼ୀ, ସେ ଦାମ ଦାସ, ରାମା ଶାମାଙ୍କୁ ମଶାଣିରୁ ଡାକ୍, ପିଠିରେ ପଡ଼ିବେ । ମାରି ତ ନାହିଁ, ମିଛରେ ଯେବେ କହିଲୁଣି, ତତେ ଘରେ ନୁହେଁ—ବର୍ ବଜାରରେ ଯୁତାରେ ନାଲ୍ କରିଦେବି । ଆଉ ସେ ରଘୁକୁ କହିବୁ, ପିଠିରେ ଚମଡ଼ା ବାନ୍ଧିଥିବ । ଛିକ୍, ଡାହାଣୀ ବୁଢ଼ୀ !

ସଦାନନ୍ଦ—ଆଃ, କଅଣ ଗୁରୁଏ ଏମିତି କହୁଚୁ ବଶୁ । ଗ୍ଲଲବଟି ମାଉଷୀ ।
ଗୁରେଇ—(କାନ୍ଦି କାନ୍ଦି) କେହି ମୋର ନାହାନ୍ତ ବୋଲି ସିନା ! ମତେ ବାରଛଡବ୍ଏ ଆଜ......

ବଶ୍ୱନାଥ—ଏ, ଏ, ମୁହଁ ସମ୍ଭାଳି କଥା କହ ବୁଢ଼ୀ ! କର୍ମ ତୋର ସଳଖ । ଘଇ ଅଛନ୍ତ ବୋଲି, ନଇଲେ.....

(ଉଠି, ବାହାର ଆଡ଼କୁ ମୁହାଁଇଲେ । ସଦାନନ୍ଦ ପଛରେ ଗଲେ ଗୁରେଈ ଗ୍ଲଲି ଯାଉଥାଏ ।

ବଡ଼ବୋହୂ—ତୁମେ ଭୁଲ ହବ ନାହିଁ ବଶୁ ? ଗ୍ଲଲ ଘରକୁ ।
(ବିଶୁକୁ ସଙ୍ଗରେ ନେଇ ଗ୍ଲଲିଗଲେ ଘରକୁ)

---

## ଦ୍ୱିତୀୟ ଦୃଶ୍ୟ

—କକ୍ଷ—

(ଗଣପତି ବାବୁ ଓକିଲ ଓ ରଘୁବାବୁ ଜମିଦାରଙ୍କ ଗୁମାସ୍ତା)

ଗୁମାସ୍ତା—ଦଣ୍ଡବତ ଆଜ୍ଞା !

ଗଣପତି—ଓ, ଗୁମାସ୍ତା ବାବୁ କି ? ଦଣ୍ଡବତ, ଦଣ୍ଡବତ । ବସ, ବସ । ଏଇକ୍ଷଣି ତ ତମର ମାଲିକଙ୍କ ଫାଇଲ ଧରି ବସିଥିଲି । କେତେବେଳେ ଆଇଲ ?

ଗୁମାସ୍ତା—ଗୋଡ଼େ ଗୋଡ଼େ ତ । ମାଲିକ ପାଚିଲା କଦଳୀ କାନ୍ଦିଟାଏ ଆଉ ଘିଅ କିଛି ପଠେଇଥିଲେ ଯେ, ପୂଜାଘ ସିମା ଦେଇ ଦେଇଛି ।

ଗଣପତି—ଭଲ କରିଚ ଯେ, ବାକ, ଅର୍ଥଗ୍ରାହୀ ସନ୍ୟାସୀ ଆମେ । ଦଣ୍ଡପ୍ରଣାମରେ ସନ୍ତୁଷ୍ଟ ହେବା କଥା କଲେ ଚଳିବ ? କେଶ୍ ବଡ଼ ଜବ୍‌ବର । ମୁଁ ପୋଲିସକୁ ଧର୍‌ଧରି କରି, ହାକମକୁ ଆଇନ ପଏଣ୍ଟ ବୁଝାଇ, ମୁଦାଲମାନଙ୍କ ନାଆଁରେ ସମନ କରେଇ ଦେଇଚି ।

ଗୁମାସ୍ତା—ଦେଇଛନ୍ତ ? ଆଉ ସଦାନନ୍ଦ ନାଆଁରେ ?


Digitised by srujanika@gmail.com

ଗଣପତି—ହଁ ? କିଏ ? ସଦାନନ୍ଦ ? (ଟିକିଏ ରହି ନଥିପତ୍ର ଓଲଟାଇଲେ) ଓ, ସେ ତ ପ୍ରଥମ ନମ୍ବର ମୁଦାଲା ।

ଗୁମାସ୍ତା—ଆଜ୍ଞା, ଆଜ୍ଞା । ହେଲେଣି ତ ? ଠିକ୍ । ଘର ପାଜି ସେ ଆଜ୍ଞା ! ଇସ୍କୁଲରେ ମାଷ୍ଟର ହେଇ, ଗାଆଁ ଗୋଟାକ ସାରିଦେଲାଣି ସେ । ଆଜି ତାର ଯୋଉ ଘର—ସେଇଟା ଖସିଗଲା ।

ଗଣପତି—ସେ ଖସିଗଲା, ଲିଖିଗଲା କଥା ତ ଦେଖାଅଛୁ, ଏଇନେ କିଛୁ ମାଲ ଆଣିକରି ଆସିଚ—ନାଁ······

ଗୁମାସ୍ତା—ଆଜ୍ଞା, ସେ ପଦ ତ ମୋ ହାତରେ ନୁହ । ଖୋଦ୍ ମାଲିକ ତାରି କାରବାର କରନ୍ତି ।

ଗଣପତି—ଆଉ ତୁମେ କଅଣ ଆସିଚ······? ବୁଝିଲ ଗୁମାସ୍ତାଏ, ସେ ତୁମ ଜମିଦାରୀ ସିରସ୍ତା ନୁହେଁ । ଫୌଜଦାରୀ ମକଦ୍ଦମା କରିଚ ଦାଉ । ଏକୂଳ ନହେଲା ବେଳକୁ ସେକୂଳ ଖାଇବ । ଯୁଆକୁ ମୂଳରୁ ନ ଜଗିଲେ ତମ ମାଲିକଙ୍କ ଅବସ୍ଥା ଫେର୍ ବାରଣ୍ଡା ଢକଡ଼ା । ଚଟ୍ ଓଲଟି ପଡ଼ିବଟି ।

ଗୁମାସ୍ତା—କଅଣ କହୁଛନ୍ତି ? ଯୁଆ ଏବେ ଅଛି ?

ଗଣପତି—ଏଇ ସଞ୍ଜଗାଡ଼ିରେ ତୁମେ ଗାଆଁକୁ ଯାଇ, ମାଲିକଙ୍କୁ ନେଇ ଆସ । ଟଙ୍କା ଦୁଇଶ ହଠାତ୍ ଦରକାର । ବୁଝିଲ ?

ଗୁମାସ୍ତା—ଆଜ୍ଞା !

ଗଣପତି—ଆଉ ଆଜ୍ଞା କଅଣ ? ଉଠ ତ, ବାଟରେ ଷ୍ଟେସନ ପାଖ ହୋଟେଲରେ ଖିଆପିଆ ଗଣ୍ଡେ କରି, ଟିକଟ କାଟ । ହେଳା କଲେ ପଛରେ ଆଉ ମୋ ଦୋଷ ଦବାକୁ ନଥିବ । ମୁଁ ବାହାରିଲି କଚେରିକି, ହଁ— (ଚୌକି ଘୁଞ୍ଚେଇ ଉଠିଲେ)

ଗୁମାସ୍ତା—ହଉ ଆଜ୍ଞା, ଦଣ୍ଡବତ !

ଗଣପତି—ହଁ, ହଁ । ରତନ ! ଏ ରତନା ! (ଡାକ ଡାକ ବାହାରିଗଲେ)

---

## ତୃତୀୟ ଦୃଶ୍ୟ

(ଭାଗବତ ପାଠ ହେଉଥିଲା—ରଘୁବାବୁଙ୍କ ଠାକୁର ଘର)

ଗୋବିନ୍ଦ ବସ୍ତ୍ରହରନ୍ତ ମନେ
ଆଜ ରମିବା ବୃନ୍ଦାବନେ ॥
ଷୋଳ ସହସ୍ର ଗୋପ ନାରୀ
ମୋତେ ବରିଲେ ତପ କରି ॥

(ନେପଥ୍ୟରୁ ଗୁରେଇ ବଡ ପାଟିରେ କାନ୍ଦିଲାପରି କହୁଛି)

ଗୁରେଇ—ଆଲେ, ମତେ ମାରି ପକାଇଲା ଲେ । ଋଇଜଲା ଢ଼'ଭାଇ ଯାକ ମିଶି ମୋତେ ମାରି ପକାଇଲେ ଲେ ।

ରଘୁ—ରହିବଟି, ରହିବଟି ଆଗ୍ରଯୌ । କଏ ସେ ପାଟି କରୁଚ—ହେ ତ ଗୁରେଇ ଖୁଡ଼ୀ ଭୁଣ୍ଡ । କଏ ? ଗୁରେଇ ଖୁଡ଼ୀ ?

(ଗୁରେଇ ଲୁହ ପୋଛୁ ପୋଛୁ ଆସିଲା)

ଗୁରେଇ—ହଁ ରେ ରଘୁ ! ନିଆଁ ଲଗା ସଦେଇ, ବଣିଆ ଢ଼'ଭାଇ ଯାକ ମିଶି ମତେ······

ରଘୁ—କଅଣ ହେଲା ? ତତେ—?

ଗୁରେଇ—ମାଇଲେ ରେ ପୁଅ !

ରଘୁ—ମାଇଲେ ? ତତେ ? ଏଁ ?

ଗୁରେଇ—ହଁ ରେ ବାପ ! କ ଘର ଝିଅ, କ ଘର ବୋହୂ ମୁଁ । ଆଜ ମୋର ସାମ, ଶାମ ଗଲେ ବୋଲି ସିନା ! ଏଁ ଏଁ ଏଁ (କାନ୍ଦିଲା)

ରଘୁ—କିଛି ନାଇଁ । ତୁନି ହ, ତୁନି ହ । ମୁଁ ତ ପୁଅ ବଦଳରେ ପୁଅ ଅଛି ତୋର । ଚିନ୍ତା କଅଣ ? ଡ଼ାକ୍ତର ସାର୍ଟିଫିକେଟ ନେଇ ମୁଁ ସାଙ୍ଗେ ସାଙ୍ଗେ ସେ ଢ଼'ଭାଇଙ୍କି ଦେଖଛି । ସାନଟା ଓକିଲାତି କରୁଛି ବୋଲି, ବେଶୀ ଗର୍ବ ତାର ।

ଗୁରେଇ—ସେଇ ତ, ସେଇ ବଣିଆ ତ ମତେ ମାରେ ନମାରେ ହେଇ ମିଶି ଆସିଲା ।

ରଘୁ—ତେବେ ତତେ ମାରି ନାହାନ୍ତି ବୋଲ ।

ଗୁରେଇ—ମାରି ନାହାନ୍ତି ? ହାଇରେ କପାଳ । ଆଜି ଯେବେ ମୋ ରମିଆ, ଶାମିଆ ଥାଆନ୍ତେ—

ରଘୁ—ଆଲୋ ! କାନ୍ଦୁଚୁ କାହିଁକି ? ତୁ ପରା କହୁଚୁ ମିଶି ଆସିଲା ?

ଗୁରେଇ—ଖାଲି ମିଶି ଆସିଲା ? ଆରେ ସେଇଆ କଅଣ ହେଲା ନାହିଁ ? ଆଉ ମୋ ଦେହର ଅବସ୍ଥା ଅଛି ? କୁଆଡ଼େ ଗଲ ରେ ମୋ ରାମା ଶାମା !

ରଘୁ—ଫେର୍ ତ କାନ୍ଦିଲୁ ! କଥାଟା କଅଣ କହିଲେ ସିନା—

ଗୁରେଇ—ଆଉ କହିବି କଅଣ ରେ ରଘୁ ! ତୁ ଏ ଗାଁର ରଜା । ଜମିଦାର ଥିଲୁ ପରା ? ତତେ କହିଲା ଯୋତା ମାରିବ । ଆଉ ମୋ କଥା କେତେକେ ? (କାନ୍ଦିଲା ପରି) ମୋ ରାମରେ, ମୋ ଶାମରେ ? ଏତେବେଳେ ତେମେ ଦହେଁ ଥାଆନ୍ତ କି—

ରଘୁ—ଯୋତା ମାରିବ ସେ ମତେ, ନାଁ ? ଆଉ ତତେ ମାରିଲା ? ଆଚ୍ଛା ! ଆଗ୍ୱର୍ଯ୍ୟ, ପୁରାଣ ସେଣ୍ଟିକରେ ଥାଉ । ଏଇ ଠାକୁରଙ୍କ ଭୋଗଖିଆ ନେଇ ତ ସବୁ ଭିଆଣ ! ସେଇ ଥିଲେ ବୁଝିବେ ।

(ହାତଯୋଡ଼ି ମୁଣ୍ଡରେ ଲଗାଇଲା)

ଆଗ୍ୱର୍ଯ୍ୟ—ଆଜ୍ଞା, କି କଥା ଯେ ? କୁଞ୍ଜବିହାରୀ ଆମର ଯେତେହେଲେ ରାଜପ୍ରତିଷ୍ଠ ଦେବତା । ସ୍ୟାଙ୍କ ପାଖେ ପାଖେ ପୁଣି ସଦାନନ୍ଦ ଘର ଦାଉଁ ବସି ଭୋଗ ପାଇବେ ? ଏଗୁଡ଼ାକ ଅବଧି, ଅନାଗ୍ୱର କଥା ନୁହଁ ତ ଆଉ କଅଣ ?

ରଘୁ—ହଉ, ହଉ ଖୁଡ଼ୀ, ତୁ କାନ୍ଦନା, ସେ ଦି'ଭାଇଙ୍କ କଥା ବୁଝୁଛି ।

(ଗୁମାସ୍ତା ଆସିଲେ)

ଗୁମାସ୍ତା—ଦଣ୍ଡବତ ଆଜ୍ଞା !

ରଘୁ—ଗୁମାସ୍ତାଏ, ଖବର କଅଣ ?

ଗୁମାସ୍ତା—ଗଣପତି ବାବୁ ଓକିଲ କହିଲେ ମୁଦାଲିମାନଙ୍କ ନାଆଁରେ ସମନ ହେଇଗଲା ।

ରଘୁ—ହେଇଗଲା ? ବେଶ୍ । ଏଥର ବଚା ! ହୁଁ ।

ଗୁମାସ୍ତା—ଆଉ କହୁଛନ୍ତି ସାଆନ୍ତ ଟଙ୍କା ଢାଇଶ ଧରି ବେଗେ ଯାଆନ୍ତୁ । ମାମଲା ଠିକଣା କରିବାକୁ ହବ । ଓକିଲ ଘର ରେଣ୍ଡିଆ । ଖାଲି ନା'ଲ୍ ପଢ଼ିକରି ଅଛନ୍ତି । ସଦେଇକି ତ ଦେଖିଲେ କଞ୍ଚା ଖାଇ-ଯିବେ । ହାକିମକୁ, ପୁଲିସକି ସବୁ ବୁଝେଇ ଦେଇଛନ୍ତି ।

ରଘୁ—ଗାଡ଼ି ସଜିଲି କର । ସେ ଢ'ଙ୍ଗଇ, ପୁଣି ଗୁରେଇ ଖୁଡ଼ୀ ଯାଇଥିଲା !—ତାଙ୍କ ଘରକୁ ତା ଡ଼ିହ କଥା କହିବାକୁ ଯେ; ଘଣ୍ଟି ମଣିଷ, ତାକୁ ଠକି କରି ତ ଡ଼ିହ ଖଣ୍ଡି ନେଲେ । ତା ଉପରେ ପୁଣି ଗାଳି ଫଜିତ !

ଗୁରେଇ—ଖାଲି ଗାଳି ଫଜିତ୍ ! ଆଜି ଯେବେ ସତରେ ମୋ ଢ'ପିଲା ଥାଆନ୍ତେ—ସେ ପୁଣି ମୋତେ ଏତେ ଅବସ୍ଥା—?

ରଘୁ—ସେଇଆ କହୁଚି ପରା । ଗାଳି ଫଜିତ୍ କରି ମାରି, ନମାରି !

ଗୁମାସ୍ତା—ଏଁ ? କଅଣ ହେଲା ? ଗୁରେଇ ମାଉସୀକୁ ମାଡ ?

ରଘୁ—ତୁମେ ଯିବଟି । ଗାଡ଼ି ସଜିଲି କରିବାକୁ କହ । ମୁଁ ଖାଇ ସାରି ଏଇ ବାଉବାଉ ବାହାରିଲି । ଖୁଡ଼ୀ ! ତମେ ମୋ ସାଙ୍ଗରେ ଯିବ । କାଲି କଚେରୀରେ ଫେର୍ ମାମଲା ଯୋଡୁଚି । ଚାଲ ଖୁଡ଼ୀ, ଭିତରକୁ ଚାଲ । ବଡ଼ଟା ନାଆଁରେ କରି ସାନଟାକୁ ଛାଡ଼ି ଦେଇଥିଲି ଯେ—ଛାଡ଼ି, "ଲଙ୍କାରୁ ଯେତେକ ବାହାର—ସମସ୍ତେ ଅସୁର ଆକାର ।"

ଗୁରେଇ—ମାରି ପକାଇଲେ ରେ ବାଡ଼ପଡ଼ା ମତେ—ଓଃ, ହେ ଠାକୁରେ ! ହେ ଧରମ! କୁଆଡ଼େ ଗଲରେ ରାମା, ଶାମା ।

ରଘୁ—ଚାଲ, ଚାଲ, ଗାଡ଼ିବେଳ ହେଇଯିବ ଫେର୍ । ଖାଇକରି ବାହାରି ପଡ଼ିବାକୁ ହବ । (ସମସ୍ତେ ଚାଲିଗଲେ)

---

# ଚତୁର୍ଥ—ଦୃଶ୍ୟ

(ସଦାନନ୍ଦଙ୍କ ଘର)

ବଶି—ଘର ତ ଗୋଟେ ମାମଲା ! ତୁମେ ନୂଆବୋହୂ ଏତେ ଭୟ କରୁଚ କାହିଁକି ? ଠାକୁର ତ ଠାକୁର ? ସେଥିରେ ସାନବଡ଼, ଆଗପଛ ଗୋଟେ କଅଣ ? ନାଁ ବଡ଼ଲୋକର ଠାକୁର ବୋଲି ସେ ଆଁ କରି ଭୋଗ ଖାଉଛନ୍ତି ?

ବଡ଼ବୋହୂ—ଭାଇ ତ ମାମଲା ମକଦମା କଅଣ ଜାଣନ୍ତି ନାହିଁ । କୋଉଠି ସେ ମାମଲାରେ ଯାଇ ହାକିମ ଆଗରେ କଅଣ କହିବେ, କଅଣ କରିବେ—ମୋର ସେତିକ କଥାକୁ ଗୁନଆଁ । ଗଲେ କୁଆଡ଼େ ? କାଇଁ, ଏତେବେଳଯାଏଁ ତ ଆଇଲେ ନାହିଁ ।

ବଶି—କିଛି ନାହିଁ, ମୁଁ ସବୁ ଯୋଗାଡ଼ କରିଦେଇ ଆସିଚି । ରହିଯାଇଥାନ୍ତି, ଖାଲି ଗାଆଁରେ ରଘୁ ଯେମିତି ଗୋଳମାଳ ଲଗେଇଛି, ଘରେ କେହି ନଥିବାଟା ଭଲ ନୁହେଁ, ଏଇଥି ପାଇଁ ଆସିଲି ସିନା ! ପ୍ରେସିଡେଣ୍ଟ ତ ରିପୋର୍ଟ ଦେଇ ସାରିଛନ୍ତି । ଆମର ଓଲଟି ତା ନାଆଁରେ ଦୁଇଣ ଏଗାର ଆଣିବା କେମେତେ, ସେଇ ବିଗ୍ଭର ପଡ଼ିଚି ଏଇନେ ।

ବଡ଼ବୋହୂ—ସେ ଫେର୍ କି ମାମଲା ?

ବଶି—ଫଉଜଦାରୀ ମାମଲାର ଓଲଟ କଲା ସେ ନୂଆବୋହୂ ! ଶୁଣି ନାଁ, ପୁଅ ମାଆକୁ କହିଲା—ମାଆଲୋ, ମାଆ, ମୁଁ ପାଇକ ହେବି । ମାଆ ସେଇଠୁ ପଗ୍ଭରିଲା, କଅଣ କରିବୁ ପାଇକ ହେଇ ? ପୁଅ କହିଲା—ଗୋଡ଼େଇବି ଲୋ ମାଆ । ମାଆ ହସି ହସି କହିଲା—ହଇରେ ପୁଅ ! ତୁ' ତ ଗୋଡ଼େଇବୁ, ବାକି ସେ ଓଲଟା ଗୋଡ଼ାଇଲା ବେଳକୁ ? ପୁଅ ଟିକିଏ ଭାବିଲା—ସେଇଠୁ କହିଲା—ହଁ ଲୋ ମାଆ, ସେ ତ ଖଣ୍ଡିଏ । ସେଇମିତି ମାମଲା ଦାଏର କରିଦେଲେ

ତ ହେବ ନାହିଁ, ସମ୍ଭାଳିବା କଥା ଅସଲ । ଦୁଇଶ ଏଗାରରେ ଓଲଟି ମାମଲା ଚଳିବ । ଆହୁରି ମାନହାନି ହବ—ସେ ବହୁତ କଥା ।

ବଡ଼ବୋହୂ—ସାକ୍ଷୀମାନେ ପର ସବୁ ତା ହାତରେ ?

ବଣି—ଗାଆଁ ଭିତରେ ସିନା । ବାରମାଣ ଗୋରଡ଼ା ଡେଇଁଲେ ? କେହି ତା'ର ନୁହିଁ । ସବୁ ଓଲଟି ପଡ଼ିବେ । ମୁଁ ପରଖି ନେଇକରି, ତେବେ ଯାଇଁ ଭାଇଙ୍କି ଏକୁଟିଆ ଗ୍ଭଡ଼ି ଆସିଲି ନାଁ । ଗୁରେଇ ମାଉସୀ ରଘୁର ଶିଖାଣରେ ଆସିଥିଲା । ଭାଇ ଆଉ ତମେ ସିନା ମୋତେ ଖରକ୍ ହେଲ ସେଦିନ । ସେ ଗୋଟେ ଛେଉଣ୍ଡି ବଲେଇ । ଦୁଃଖୀଟାକୁ ଦେଖୁନା ! ବେଉସା ନ ଥିଲା ଲୋକ କଅଣ କରିବ ଆଉ ?

ବଡ଼ବୋହୂ—ଦୁଃଖୀ କଥା କହନା ବଣି । ତା ଗୁଣ ତ ଗାଇଲେ ସରିବ ନାଇଁ । ଚଣ୍ଡୀଟାଏ ତ ! ସେ-ଘରକୁ ଆସିଲେ ମତେ ଡର ମାଡ଼େ । କି ଅସନା ! ଏଠି ଗ୍ଭପ, ସେଠି ପାନପିକ—ବାଗ ବାଇଶ ଅଛି ସେଇଟାର ?

ବଣି—ସେମିତି ଅଣ୍ଡିରାଚଣ୍ଡୀ ଗୋଟାଏ ଏ ଗୁରେଇ ମାଉସୀ । ଦୁଃଖୀ ଷୋଳଅଣା ହେଲେ ଏ ବାରଅଣା । ତାକୁ ଶିଖେଇ ମତେଇ ଗୋଟେ ନାଟ ଲଗେଇବାକୁ ବସିଛି ରଘୁ । କରୁ, ଫେର୍ ପାନେ ପାଇବ । ଏଇଥର ମୁଁ ତାର ହାତ ଗୋଡ଼ ଅଳଗି ଦଉଛି । ତୁମେ ଥୟ ଧର ।

ସଦାନନ୍ଦ—(ଆସିଲେ ବାହାରୁ ଡାକ ଡାକ) କୁଆଡ଼େ ଗଲ କି ?

ବଡ଼ବୋହୂ—ହେଇ, ଭାଇ ଆସିଲେଣି ।

ବଣି—ପଗ୍ଭରିବା, କଅଣ ହେଲା ।

ବଡ଼ବୋହୂ—ଏଇଠି ବଣିଙ୍କ ସଙ୍ଗେ ତମ ମାମଲା କଥା ପକେଇଥିଲି । ଆଉ କଅଣ କରିବ ?

ସଦାନନ୍ଦ—ମାମଲା ଆମର ଡିଗ୍ରୀ ହେଲା—ହାକିମ ଦୁଇଶ ଏଗାର ମଞ୍ଜୁର ଦେଲାରେ ବଣି ।

ବଣି—ହେଲା ? ନୂଆବୋହୂ, ଏଥର ମନ ଖୁସି ତ ? ମୁଁ ପରା କହୁଚି, ଏଥର ରଘୁର ବଡ଼ଲୋକ ନବାବ୍ ପଣିଆଁ ଘୁଞ୍ଚିଯିବ ।

ସଦାନନ୍ଦ—ଘୁଞ୍ଚୁ, କି ମିଳିବ ସେଥିରୁ ? ଆଉ ଏକ ମାମଲା କଅଣ ଯୋଡ଼ିବାକୁ ଆଇଚି ସେ ଗୁରେଇକି ନେଇ କରି ।

ବଣି—ସେ ଏଇ ମାମଲା ପରି ଯିବ । ତମେ ତ ଆଇଲଣି, ମୁଁ କାଲି କଟକ ଯାଉଚି । ସବୁ ଠିକ୍‌ଠାକ୍ କରି ଦେଇ ଆସିବି । ପୁଅ ମାଳି କିଣିଛି,—ବସି ଗଡ଼ଉଥିବ କିଛି ଦିନ ପାଇଁ ।

(ଗୁମାସ୍ତା ଆସି ଡାକିଲେ)

ଗୁମାସ୍ତା—ସଦେଇ ଭାଇ ଘରେ ଅଛ ?

ବଣି—କିଏ ?

ଗୁମାସ୍ତା—ମୁଁ ତ ରାଧାକାନ୍ତ ।

ସଦାନନ୍ଦ—ଓ, ରାଧୁ ଗୁମାସ୍ତା ।

ବଣି—ଭାଇ ତ ଏଇନେ କଟକରୁ ଫେରିଲେ ।

ରାଧୁ—ସେଇଆ ବୁଝିବାକୁ ଆସିଲି । କଅଣ ହେଲା ଫେର୍ ମାମଲା ?

ସଦାନନ୍ଦ—ଆସ, ଏଠିକି ଆସ ।

ବଣି—ନୂଆବୋହୂ, ଟିକିଏ ଆଡ଼େଇ ହେଇଯିବଟି ।

(ବଡ଼ ବୋହୂ ପ୍ରସ୍ଥାନ)

ରାଧୁ—କଅଣ ହେଲା ଆଜି ?

ସଦାନନ୍ଦ—ମିଛ ମକଦମା ବୋଲି ରାୟ ଦେଲେ ହାକିମ । ଆମେ ପୁଣି ଦୁଇଶ ଏଗାର କରିବୁଁ ।

ରାଧୁ—ବେଶ୍, କୁଞ୍ଜବିହାରି ହେ ! ଆରେ ସଦେଇ, ତୋ ଦୁଆରକୁ ତ ଆସିବାକୁ ମନା । ମାହାଲି ବଣି ତଳ ଜମି ଖଣ୍ଡିକ ବେନାମୀ କରି ଧରାଇଲା । ଏବେ ମୋ ଭାଗ ଦେଲାବେଳକୁ ବାରି ଆଇନ

ଖେଳଲାଣି । କୁଳ ନାଶ ବେଳକୁ ଘୋଡ଼ାମୁହାଁ ଜାତ ହେଲାପରି ଏଇଟା ଆମ ଗାଆଁର ଗୋଟେ କୁଳାଙ୍ଗାରରେ-କୁଳାଙ୍ଗାର । ଦେ ଦୁଇଶ ଏଗାର କର । ପାଉ ପିଲ୍ କୋଉଁଆଏ ।

ସଦାନନ୍ଦ—ଫେର ତ କଅଣ ଆମ ନାଆଁରେ ମାମଲା ଯୋଡ଼ିବା ପାଇଁ ରହିଲେ ସେ । ଓକିଲ ମସୁଧା କରୁଛନ୍ତି ବୋଲି ଶୁଣିଲି ।

ସାଧୁ—ସାକ୍ଷୀ ଗୋଟିଏ ମିଳବେ ନାଇଁ ମ । କୁରୁବଳଙ୍କର ଖାଇ, ପାଣ୍ଡବଙ୍କର ଗାଇବେ ସବୁ । ତୁ ନିଶ୍ଚିନ୍ତ ଥା । ଆମେ ସବୁ ଅଛୁଁ । ମୁଁ କହିଲି, ଗାଆଁ ପଞ୍ଚୁଆତରେ ପକେଇ କାଇଲି-କଣ୍ଟୁର, ଚୁଜୁମୁଜୁ କରେଇ ନିଅ । ନ ହେଲା—ତଣ୍ଟି ଚିପା ଧନ ତ ଅଛି । କହନ୍ତି ପରା— ଅଧର୍ମ ବଢ଼—ବଢ଼େ ବହୁତ, ଗଲାବେଳେ ଯାଏ ମୂଳ ସହିତ । କଥା କଅଣ କି, ତାଙ୍କର ତ ଢିଅଁ ଦେଉଳ ଅଛି, ସେ ଥିଲେ ଜମିଦାର—ରଜା । ଆଉ ଫେର୍ ଗୋଟେ କିଏ କାହିଁକି ଏ ଇଲାକାରେ ମୁଣ୍ଡ ଟେକିବ ? ଏଇଆ—ଏଇଆ ।

ବଣି—ମାମଲା ଶିଖିଯିବେ ଏଇଥର ।

ସାଧୁ—ମୁଁ ଯାଉଚି, ମନଟା କେମିତି ଗୁଡ଼ରେଇ ପୁଡ଼ରେଇ ହେଲାଣି । ଦଉଡ଼ି ଆସିଲି ଖବରଟା ବୁଝିଯିବାକୁ । କେହି ନଥିଲେ ତ; ଆଗୁ, ବାପ, ଦାଣ୍ଡରେ ଦେଖିଲୁ, କିଏ ଅଛି କି ନାହିଁ, ମୁଁ ଯିବି ବାହାରି ।

ବଣି—ହଉ, ଆସ । ବଡ଼ ଉରକୁଲା ଦେଖୁଛି ତମକୁ ଗୁମାସ୍ତାଏ !

( ଆଗଭର ହେଲେ )

ସାଧୁ—ଆରେ ବାପୁ, ଗୁଳକରି ପରା କରିଚେଁ । ଆ ଟିକିଏ ଆ । ହଉ ସଦେଇ, ମୁଁ ଗଲି । ଫେର୍ ବେଳ ଦେଖି ଆସିବି ଯେ । ତୁ ଦୁଇଶ ଏଗାର କର—ନିଷ୍ଠା ଏକା କରିବୁ । ଗୁଡ଼ ନାଁ ।

( କହୁ କହୁ ବାହାରିଗଲେ )

---

## ପଞ୍ଚମ ଦୃଶ୍ୟ

(ରଘୁର ଘର)

ରଘୁ—ଆଚାର୍ଯ୍ୟେ ! ଆଜି ଘଟଣା ଫେର୍ କଅଣ ?

ଆଚାର୍ଯ୍ୟେ—କଅଣ ଆଉ ଆଜ୍ଞା, ହୋମ ତ ଚାଲିଛି । ଚଣ୍ଡୀ ଗୁଣାକୁ ତ ପାଢ଼ୁଣୀ ମହାପାତ୍ରେ ବରଣ ହେଇଛନ୍ତି ।

ରଘୁ—ଆହେ, ସେ ତ ହଉଚି । ଠାକୁରାଣୀଙ୍କ ଆଜ୍ଞା ଫୁଲ ଖସିଲା କି ନାହିଁ ?

ଆଚାର୍ଯ୍ୟେ—ଆଜ୍ଞା, କାଇଁ ସେତିକ ତ ହେଉ ନାହିଁ—ଦାନା-ଦୁଆର, ମିଛ କଥାଟା କେମିତେ କହିବ ?

ରଘୁ—ଆଉ ପୂଜା କରୁଚ କଅଣ, ଛେନା ? ତାଳମାରି, ନାକ କାନ ଚିପି, ଭୋଗରୁ ଭାଗ ମାରି ଜାଣିଚ ଖା'ଲା । ତମରି ନନା ଥିଲେ ଯେ, ଏଇ ଠାକୁରାଣୀ ଡ଼ାକଲେ ଓ କରୁଥିଲେ, ଆଉ ତୁମେ ତାଙ୍କର ପୁଅ-ଧିଅ ପୂଜା କରୁଛ ଯେ, ଗୁରୁ ଗୋଟାଏ ହୁକୁମ ଆଣି ପାରୁନା ।

ଆଚାର୍ଯ୍ୟେ—ଆଜ୍ଞା, ସେ ସବୁ ଭକତି ଅନୁସାରେ ସିନା ଫଳ ? ଆମେ ଜଣା କରିବା କଥା । ସେଥିରେ ହେଲା ହଉନାହିଁ । ଆଉ ତେଣିକି—

ରଘୁ—ହଁ ହେ, ସେଇଆ ତ କହିବ । ଖାଲି ଏଣିକି—ତେଣିକି—କଥା ଚକ୍‌କଣ ଗୁଡ଼ିଏ ଶିଖିଛ, ନଇଲେ ଆଉ କିଛି ନାଇଁ । କହିଲ— ଭକତି, ଆମର କଅଣ ଭକତି ଊଣା ଦେଖିଲ ? ଭୋଗରାଗ, ମାନ୍ତିକାନ୍ତି, କୋଉଥିରେ ଊଣା କଲୁଁ ? ତାଙ୍କରି ମାନ ପାଇଁ ତ ଏ କଳି—ଏ ଗୋଳ, ମାଲି ମକଦମା—ସବୁ । ଆଉ ଆମର ସ୍ୱାର୍ଥ କଅଣ ? ଫଳ ହେଲା ଓଲଟି ଆମର ଅପମାନ, ଅର୍ଥନାଶ, ମନସ୍ତାପ—କଅଣ ଆଉ ବାକି ରହିଲା ?

ଆଚାର୍ଯ୍ୟେ—ସତ ଯେ ଆଜ୍ଞା । ସବୁ ସେଇ ଧିଅଙ୍କ ଇଚ୍ଛା । ଆମର ବଳ କେତେ ? କହୁଛି ପରା, "ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଟାଣିବ ତେଣିକି ଯାଇ ।"

ରଘୁ—ନାଇଁ, ସେ ସବୁ ଶୁଣାଯିବ ନାହିଁ । ହୋମ, ଯାଗ—ଏଥିରେ ତ ଫେର୍ ବଦଳି ଯାଉଛି ନାଁ ସବୁ ? ପୁରାଣ ଶାସ୍ତ୍ର କଅଣ ମିଥ୍ୟା ?

ଆଗ୍ରହୋତ୍ୟ—ଆହା ! ଏକଥା କିଏ କହିବ ? କାହା ଜିଭରେ ହାଡ଼ ଅଛି ?

ରଘୁ—ତେବେ ? ଫଳ ହେଲା କୋଉଠି ? ହେଲା ଏବେ, ଆମେ ଜାଣି-ନ ଜାଣି ନ୍ୟାୟ ଅନ୍ୟାୟ କରି ପକେଇଚୁଁ । ତାକୁ ତୁମେମାନେ ବଦଳାଇ ପକାନ୍ତ ନାହିଁ ? ବାପାଙ୍କ ସମୟରେ କେତେ କଥା ଏମେତେ ଆମେ ଶୁଣିଚୁଁ । ସେଇ ଠାକୁର ତ ଅଛନ୍ତି । ତୁମେମାନେ ଠିକଣା କରି କାମ କରି ପାରୁନା । ନଇଲେ, ହେଲା ମକଦମାଟା ଓଲଟି ପଡ଼ନ୍ତା ? ପୁଣି କଅଣ ନାଁ—ଆମ ନାଁଆରେ ଓଲଟି ଦୁଇଶ ଏଗାର—ମାନହାନି ? ସଦେଇ ହେଇ ମଣିଷ—ସେ ଜିଣିଯିବ ? ଆମ ନାଆଁରେ ସଭା ପଞ୍ଚୁଆତ ବସି, କାଇଲି କସୁର ନ୍ୟାୟ ନଶାପ ହବ ? ଯା, ତୁମେ ଯା । କାଲିକି ହାକିମ ଆମ ଗାଆଁକୁ ଗସ୍ତରେ ଆସୁଚନ୍ତି, ଏଇଠି ସବୁ ତୁଟିଯିବ । ଯେମିତି ହଉ, ଠାକୁରଙ୍କ ଆଜ୍ଞାମାଳ ତମକୁ ଆଣିବାକୁ ପଡ଼ିବ । ତମେ ଆଜି ରାତିସାରା ବସି ଭଲକରି ଜଣାଅଁ, ନଇଲେ ଫେର୍ ମତେ ପଛରେ ଦୋଷ ଦବନାହିଁ—ଯାଃ, ହାହ ହାହକ ଜାଗିରି ଖାଇ, ଏଇନେ କରି ପାରିବ ନାଇଁ ତ ଆଉ ପଟାପୋଷ ବଳଦ ପରି ଥିବ କାହିଁକି ? ଯାଃ—

ଆଗ୍ରହୋତ୍ୟ—ଆଜ୍ଞା, ହଉ, ରାତିକି ଘିଅଧୂପ, ଭୋଗରାଗ ପାଇଁକି—

ରଘୁ—ଆଃ, ଯାହାହବ, ଗୁମାସ୍ତାଙ୍କୁ ବରାଦ ଦେଇ କରାଅ । କାମ ଯେମିତି ହୁଏ । ଆମ ନାକନଶ ତଳେ ନପଡ଼ିଲେ ହେଲା । ବୁଝିଲ ?

ଆଗ୍ରହୋତ୍ୟ—ଆଜ୍ଞା ।

ରଘୁ—ହଁ, ଯାଅ ।

ଗୁରେଇ—(ପଦ୍ମଣ୍ଡଳା) ହଇରେ ପୁଅ, କଅଣ ସବୁ ଦାଣ୍ଡରେ ଏମେତେ ସେମେତେ କହୁଛନ୍ତି...

ରଘୁ—କହୁଛନ୍ତ ମୁଣ୍ଡ ଗଣ୍ଡି । ତୁ ଦାଣ୍ଡକୁ ଏତେ ଯାଉ କାହିଁକ ?

ଗୁଚରେଇ—ନାଇଁମ, ଗାଡଧୋଇ ଯାଇଥିଲ ଦଅଁଙ୍କ ପୋଖରୀକ ଯେ, ଆର ତୁଠରେ ସାଧୁଆ, ପଦ୍ଦଅା, ଦନେଇ ସବୁ କଥାଭାଷା ହଉଥିଲେ ତୋ'ର ନାଆଁରେ । ମୋ ଦହ କଅଣ ସହନ୍ତା ? ଯେତେକ କାଟିଲ ବାଚ୍ଛଲ ।

ରଘୁ—ଆଃ, ତୁ ଏ ସବୁଥିରେ କାହିଁକ କଥା କହୁ, କହିଲୁ ? ସେ ସବୁ ମାଲ ମାମଲା କଥା ।

ଗୁଚରେଇ—ସେଇଆ ବୋଲୁଚ । ତୁ ପରା ଆମର ଓକଲ ଦେଲୁ, ଆପେ ପୁଣି ମିସଲ ଚଢ଼ିଲୁ । ସେମାନେ କହୁଚନ୍ତ ରଘୁବାବୁ ହାରଗଲେ । ତାଙ୍କର କସୁର ହେଇଚ । ଦଅଁଙ୍କ ଲଗି କଳଟେ କଅଣ ? ଏଇମିତ କେତେକଥା । ସେଇ ସାଧୁଆ ନଆଁନଗା ତ ସବୁଠୁ ବେଶି ।

ରଘୁ—କଏ, କଏ ? ସାଧୁଆ—ଦାମା ପୁଅ ! ଆମର ଘରେ ଯେ ମଣିଷ !

ଗୁଚରେଇ—ହଇରେ ବାପା ! ତାଆର କଥା ପରା କହୁଚ ।

ରଘୁ—ଗୁମାସ୍ତାଏ, ଗୁମାସ୍ତାଏ !

ଗୁମାସ୍ତା—ଆଜ୍ଞା ! (ପ୍ରବେଶ)

ରଘୁ—କଅଣ କରୁଚ ?

ଗୁମାସ୍ତା—ଆଜ୍ଞା, କଚରୀ ଘରେ କାମ ଚୁଳଚ ।

ରଘୁ—ଛେନା ଚୁଳଚ-ଦେଖିବଟି ସେ ଦାମା ପୁଅ ସାଧୁଆ ଉପରେ ଆମର କେତେ ବାକ ଅଚ୍ଛୁ । ସୁଧ କେତେ ମୂଳ କେତେ ?

ଗୁମାସ୍ତା—ଆଜ୍ଞା, ଏଇନେ ଦେଖୁଚ ।

ରଘୁ—ହଁ, ହଁ, ଦେଖିବ କଅଣ ? ତାକୁ ଡକେଇ ଆଣି···(ଭାବ) ଉଁ—ବୁଝିଲ ।

ଗୁମାସ୍ତା—ଆଜ୍ଞା !

ରଘୁ—କଅଣ, ବୁଝିଲ ?
ଗୁମାସ୍ତା—ଆଜ୍ଞା ଡାକୁ ଡକେଇ ଆଣି—
ରଘୁ—ହଁ, ଡକେଇ ଆଣି ଟଙ୍କା ତଲବ କର ।
ଗୁମାସ୍ତା—ଦେଖେଁ ଆଗେ କାଗଜ ପତର ।
ରଘୁ—ଆଃ, ନ ହେଲେ ବନ୍ଧହଣା ଗୋଟେ କରିଦିଅ—ଦିଅଁଙ୍କ ହାତ-ମୁଖ ମାହାଲ କଅାରି ହାଣି ପାଣି ନେଇଚି ବୋଲି କହି—ପଚିଶଟଙ୍କା ଆଦାୟ କର ।
ଗୁମାସ୍ତା—ଆଜ୍ଞା, ବନ୍ଧ ହଣା ହେଲେ ସିନା !
ରଘୁ—ସତାସତି ହଣେଇ ଦିଅ ହେ । ଖରଚ ଯାହା ହବ, ହଉ ।
ଗୁମାସ୍ତା—ଆମ ଦିଅଁଙ୍କ କଅାରିରୁ ତ ପାଣି ଗଳିଯିବ ।
ରଘୁ—ନ ହେଲେ ତମ ବୁଦ୍ଧି ଖେଳାଅ । ଯେମିତି ହେଲେ ଡାକୁ ଜବତ କରିବାକୁ ହବ । ଏଇତକ ପାରିବ ନାଇଁତ ଗୁମାସ୍ତାଗିରି କରିବ କଅଣ ? ଗୋଟେ ଲୋକକୁ ଜବତ କରି ପାରିବ ନାହିଁ ? ଆଉ ସବୁବେଳେ ଦରମା ବଢ଼ା, ଦରମା ବଢ଼ା ! ଯାଅ, ଯେମିତି ହେଲେ ଡାକୁ ଦବେଇବାକୁ ହବ ।
ଗୁମାସ୍ତା—ଆଜ୍ଞା, ଇସ୍କୁଲ ବାବତ ଭେଦାଠା ସେ ଦେଇ ନାହିଁ ନାଗୁଚି ।
ରଘୁ—ବେଶ୍ ହେଲା, ଯୋଉ ବାଟେ ହଉ—ପଚିଶଟଙ୍କା ତା'ଠୁଁ ଆଦାୟ କରି ଆଜ ଆଣି ମୋ ପାଖେ ଦାଖଲ ଦବାକୁ ହବ । ଦେଖୁଚ ତ, ଏଇନେ ପୂଜା ଝଞ୍ଜା—ବାରଖରଚ ।
ଗମାସ୍ତା—ଆଜ୍ଞା, ଆଜ୍ଞା ! ଡକଉଚି ଡାକୁ ।
ରଘୁ—ଯାଅ, ବେଗେ ତଲବ କର ।
ଗୁରେଇ—ଆରେ ବାପା ! ମତେ ଆଉ ଶଏଟି ଟଙ୍କା ଦେଲେ, ମୁଁ ପୁଣି ପୁରସ୍ତମ ବାହାରି ଯାଆନ୍ତି । ଗୁମାସ୍ତାଙ୍କୁ ବରିଦ କରିଦେ ।
ରଘୁ—ଟଙ୍କା ? କ ଟଙ୍କା ? ତୋର ଆଉ ପୁଣି କୋଉ ଟଙ୍କା ?

ଗୁରେଇ—ଆରେ, ଡିହ ଖଣ୍ଡ ସିନା ସଦେଇ ନେଇଛୁ, ବାକି ଗୃଷ ଜମି, ଯାହା ତୋ ମୂଲେ କେଖେଇ ନେଲୁ ?

ରଘୁ—ଆଉ ଏଠି ରହି ଯେ ଭୋଜନଟା ପକଉଚୁ ? ପୁଣି ଆମ ଘର ବଖରାଏ ମାଡ଼ ବସିଚୁ, ତାର ତ ଭଡ଼ା ଦିଅନୁ । ଦେଖ ହେ ଗୁମାସ୍ତାଏ, ଭଲର ଯଗ କାଲ ନାହିଁ ! ଆହୁରି ମାଗୁଚି ଟଙ୍କା— ବୁଢ଼ୀ ହେଲୁ; କାଲି ମରିବୁ, ଫେର୍ ତୋ ଶୁଦ୍ଧିକୁ କେତେ ଖରଚ !

ଗୁରେଇ—କଅଣ ବୋଇଲୁ ? ମୋ ମରଣକୁ ତୁ ଏବେ ଗୃହିଁଚୁ ? ହଇରେ ଦଶମାଣ ଜମି ? ବର୍ଷେ ହେଲା ତୁ ମତେ କୁକୁର ବିଲେଇଙ୍କ ସରି ମୁଠେ ମୁଠେ ହାତଟେକା କରି ଦଉଚୁ ବୋଲି, ପୁଣି ମୋ ଖିଆଣୀ ଉଘଉଚୁ ! ଆଉ ହବାର କଥା ନାହିଁ । ନାହିଁ, ନାହିଁ ମୋ ଜମି ତୁ ମତେ ଫେରେଇ ଦେ । ଯାହା ହେଲା, ହେଲା ।

ରଘୁ—ଜମି ! ତୋର ? କି ଜମି ଲୋ ? ଟଙ୍କା ତୁ ନେଇ ଯାଉଚୁ ! ହାକିମ ଆଗରେ ମାନିଚୁ । ଖେଳୁଚି ବୁଢ଼ୀ ଆସି ମୋ ପାଖରେ ! ଗୁମାସ୍ତାଏ, ପାଞ୍ଚଟା ଟଙ୍କା ଏଇଟାକୁ ଦେଇ ଆଜି ବିଦାୟ କରିଦିଅ । ଯାଉ କୋଉଠି ପୁଣି ଛତର ଖାଇବ ।

ଗୁରେଇ—ହଇରେ, ରଘୁ ! ମୁଁ ପୁଣି ଛତର ଖାଇ ? ତୋ ତୁଣ୍ଡକୁ କଅଣ କହେଁ । ହଇରେ, ମୋର ସର୍ବସ୍ୱ ଖାଇ, ମତେ ଫେର୍ ତୁ ଧମକ ଦଉଚୁ ?

ରଘୁ—ଚୁପ୍ ରହ ବୁଢ଼ୀ, ନଇଲେ ଫେର୍ ଏଇନେ ଗାଲ ଭାଙ୍ଗି ଦେବି । ଯା, ବାହାର ମୋ ଘରୁ ।

ଗୁରେଇ—ମୁଁ ବାହାରିବି, ତୁ ରହିବୁ ? ହେ ଧର୍ମ, ତୁ ଥେଲେ ବୁଝିବୁ । ହେ ଧର୍ମ, ତୁ କଅଣ ବୁଡ଼ିଗଲୁ ? କୁଆଡ଼େ ଗଲରେ ମୋ ରାମ ଶାମ ? ଏଇନେ ଯାଉଚି ମାମଲା କରିବି । ଆଲୋ ମୋ ମହତ ଯାଉ ଦେଲା ଲୋ । (କାନ୍ଦି କାନ୍ଦି ଗଲା)

ରଘୁ—ଗୁମାସ୍ତାଏ, ଦେଖ ଦେଖ । ସେ ବୁଢ଼ୀ ଯାଇ ଦାଣ୍ଡରେ ହଲ ଲଗେଇବ । ପାଞ୍ଚଟା ଟଙ୍କା ଦେଇ ତାକୁ ତଡ଼ ଆଜ ।

ଗୁମାସ୍ତା—ଗୁରେଇ ମାଉସୀ ସେ—ଶୁଣିଲେ ତ ମୋ କଥା ।

ରଘୁ—ତୁମେ ତାକୁ କହ ଯୋଚ୍ଛୁ, ରଖେଇ ନିଅ । ସ୍ତାଗ୍ରଣ୍ଡ ଗାଡ଼ି ଖଣ୍ଡେ କରି ଷ୍ଟେସନ୍‌ରେ ସବୁ ଟଙ୍କା ଦବାକୁ କହ, ଏଠୁ ନେଇ ଯା—

ଗୁମାସ୍ତା—ଆଜ୍ଞା !

ରଘୁ—ଯା, ଯା—ଦେଖ, ଦେଖ । କୁଆଡ଼େ ଗଲା ବଦମାସ ବୁଢ଼ୀ !

ଗୁମାସ୍ତା—ଆଜ୍ଞା, ଆଜ୍ଞା (ବାହାରଗଲେ)

---

## ଷଷ୍ଠ ଦୃଶ୍ୟ (ଠାକୁରମେଲା)

ସଦାନନ୍ଦ—ମୋର କିଛି ଆପତ୍ତି ନାହିଁ । ତୁମେ ପାଞ୍ଚଜଣ ବସି ଯାହା ବିଚାର କରିଦବ, ମୋର ସେଥିରେ ରାଜି । ମୋର ଯେବେ କସୁର ହେଲା—ତୁମେମାନେ ଯେ ଦଣ୍ଡ ଦବ, ତହିଁକି ମୁଁ ହାଜର ଅଛି ।

ଗ୍ରାମପଞ୍ଚ—ନାଇଁ ସଦେଇବାବୁ ! ଆମେ ସବୁ ଜାଣିଚୁଁ । ବାଜ, ଅକାରଣେ ଧାଁ ଦଉଡ଼, ପଇସା ହାଡ଼ି ଖାଇବେ—ମାଲି ମକଦମା କଅଣ ଭଲ କଥା ? ରଘୁବାବୁଙ୍କ ଗୁଣ କାହାକୁ ଅଜଣା ? ଆଉ ଆପଣଙ୍କୁ ବା ନ ଚିହ୍ନେ କିଏ ଏ ଆଖ ପାଖ ଦଶଖଣ୍ଡ ଗାଆଁରେ ? ଆପଣ ତ ଶହ ଶହଙ୍କୁ ମଣିଷ କରି ଗୁଡ଼ୁଚନ୍ତି । ମକଦମାଟା ଏଇଠି ପଞ୍ଚାୟତରେ ଆମେ ନିଷ୍ପତ୍ତି କରିଦେବା, ଏଇଆ କହୁଚୁଁ ।

ସଦାନନ୍ଦ—ଭଲ, ଦାଅଁ ତ ସଭିଙ୍କର । ସେଥିରେ ସାନ ବଡ଼ କଅଣ ? ମୋର ଅପରାଧ କେଉଁଠି ? ସମସ୍ତେ ତ ଏଠି ବସିଛ—ବିଚାର **କର ।**

**ପଞ୍ଚ**—ଆପଣଙ୍କର ଅପରାଧ ବୋଲି କଏ କହିବ ? ଖାଲି ମାମଲାଟା ଆମ ଏ ଗାଆଁରୁ ପଦାକୁ ଦବା ନାହିଁ । ଏଇ କଥା ।

ସଦାନନ୍ଦ—ମୁଁ ରାଜି, ଅନ୍ୟ **ପକ୍ଷକୁ ପଚାର** ।

**ପଞ୍ଚ**—ସେ ତ ଆସି ନାହାନ୍ତି ।

ଅନ୍ୟଜଣେ—ମୁଁ ଡାକ ଦେଇ ଆସିଚି ।

ଆଉଜଣେ—ହଁ, ଜମିଦାର ଲୋକ, ପାଣୋଇ ନାହାନ୍ତି ପୂର୍ବ ଆଜ୍ଞା । ହଲଚହଲରେ ଆସୁଥିବେ, କି ମୋଟେ ନ ଆସି ପାରନ୍ତି । ଆମେ ଗୁରାକ କଏ ଯେ ତାଙ୍କୁ ଫେର ଡକେଇ ପଠେଇବାକୁ ମୁଣ୍ଡ ହେଲୁଣି ?

**ପଞ୍ଚ**—ଦେଖ, ଆଉ ଘଡ଼ିଏ ଚକାଅ, ନଇଲେ ଆଉଥରେ ଜଣେ କଏ ଦଉଡ଼ି ଯା ।

୨ୟ—ହଉ ଯାଉଚି ଏବେ ମୁଁ ଆଉ ଥରେ । (ଚାଲିଗଲା)

ଗୁରେଇ—(ପ୍ରବେଶ କରି) ହଇରେ ବାପ ! ଏଠି ଦୋଳ ବେଦୀରେ ପରା ତୁମେ ପଞ୍ଚ ପରମେଶ୍ୱର ଏକାଠି ହେଇଚ ? ମୁଁ ଏଗାଆଁର ରାଣ୍ଡୀ ଖଣ୍ଡି ଟାଏ । ମୋ କଥା ଟିକିଏ କେହି ବିଚାର କରିବ ନାହିଁ ?

**ପଞ୍ଚ**—କିଏ ଗୁରେଇ ମାଉସୀ କି ? ତମେ କୁଆଡ଼େ ? ଏକୁଟିଆ ଜମିଦାରଙ୍କ ଘରଗୁଡ଼ି—?

ଗୁରେଇ—ପୋଡ଼ିଯାଉ ସେ ଜମିଦାର ଘର, ନିଆଁ ନାଗିଯାଉ ।

୧ମ—କି ଓ ତମର ପୁଚୁରିଟି ସେ ! ଏମିତି ଫେର୍ କଅଣ ?

ଗୁରେଇ—ମଲାରେ, ସେଇଟା କୋଉ ପୁଚୁରି ମ ମୋର ? ଆଳଆ ନେଖାରେ ବାଳଆ ! ଆରେ ବାପ ! ସବୁ ତ ମୋର ଯାଇଥିଲା । ଶେଷକୁ ଭୂଇଁ ଦଶମାଣ ଥେଲା ଯେ, ତାକୁ ନେଖେଇ ନେଇ, ମେତେ କାଣି କଉଡ଼ିଏ ଦେଲା ନାହିଁ, କାହା ଝିଅ କାହା ଘରଣୀ ମୁଁ, ପୁଣି ବାର ଦୁଆର **ଖଇର ଖପରା**—ବଇଶୀ ଦୁଆର

ହେଇ କାନ୍ଧ ପଡେଇବ, ତମେ ଗୋଟାଯାକ ଗାଆଁ ବାଲା ଥାଉଁ ଥାଉଁ ? ହଉ, ତମମାନଙ୍କ ବସ୍ତିରକୁ ଯାହା ଆସୁଚି । ( ଶାନ୍ତ ହେଇ ହେଲା )

ସଦାନନ୍ଦ—ଗୁରେଇ ମାଉସୀ ! ଆଉ ସେଗୁଡ଼ା କହି ଶକେଇଲେ ଏଇନେ କଅଣ ହବ ? ନେଡ଼ ଗୁଡ଼ ତ କହୁଣୀକି ବୋହିଯାଇଛି । ତୁମେ ଅଧୁ ଧର । କଥା ତ ପଞ୍ଚାୟତରେ ପକାଇଲ । ସେଇମାନେ ବସ୍ତିର କରିବେ ।

ପଞ୍ଚ—ହଁ, କି କଥା ପୁଣି ! ଆଉ କଅଣ ମହତ ଘରର ବୁଢ଼ୀଟାଏ ମାଗି ଖାଇଯିବ—ତାର ଆସ୍ଥି ବାଡ଼ି ସବୁ ଥାଉ ଥାଉ ? ବସ ମାଉସୀ । ଏକଥା ପାଞ୍ଚ ଜଣରେ ପଡ଼ିବ । ରଘୁବାବୁଙ୍କୁ ପଚରାଯିବ ।

ଗୁରେଇ—ମୁଁ ଏଠି ବସିବି, ସେ ଆସିବ ? ମୋ ଜୀବନ ରଖିବ ସେ ଆଉ ?

ପଞ୍ଚ—ଆମେ ଗାଆଁ ଟାଏ, ସେ ତମକୁ ଆମ ଆଖି ଆଗରେ ଅପମାନ ଦେବେ ? ଏତେ ସାହସ ତାଙ୍କର ? ବସ ତୁମେ ମାଉସୀ ! ସେ ତ ଆସିବେ, ଆମେ ସମସ୍ତେ ତାଙ୍କୁ ଡ଼କେଇ ପଠେଇଚୁଁ । ନଆସିଲେ ତେଣିକି ଦେଖିଲା କାମ କରାଯିବ । ବସ, କର୍ପୂର କୋଉକାଳୁ ଉଡ଼ି ଗଲାଣି । ଟଙ୍କରାକନା ଖଣ୍ଡିକ ଥାଇ, ସେ ବୋଲୁଚି ମୁଁ ? ଜମିଦାର ଘର ବୋଲି ସେ ତ ବସି ଘୋଷି ହଉଛନ୍ତି ଖାଲି ।

ଗୁମାସ୍ତା—(ପ୍ରବେଶ) ସଭିଏଁ ତ ଆସିଗଲେଣି । ମୁଁ ଆସିଥିଲି । ମାଲିକ କହି ପଠେଇ ଥିଲେ; ଆସୁଚନ୍ତି ସେ । ବାହାରିଥିଲେ, କିଏ ଦୁ'ଜଣ ଆଇଲେ ଯେ, କଥନ କଥନ ହେଇ ଆସୁଚନ୍ତି ।

ପଞ୍ଚ—ଆସୁଛନ୍ତି ତେବେ ? ହଉ ହେଲା, ଆମେ ଘଡ଼ିଏ ବସିବୁଁ ଏବେ । ସେ ତ ବଡ଼ଲୋକ । ମିଣ୍ଟିକାନ୍ତ ବଡ଼େଇ ତ ଫେର୍ ଆସିବେ ?

ଜଣେ—ହଁ, ତା'ମୁହଁ କଅଣ ? ଜଗନ୍ନାଥେ ବଡ଼ ଦେଉଳରୁ ବଳେ କାଲିବେଳକୁ କେତେ ସିଙ୍ଘି ଦେଖୁନା ? ଦାଉଡ଼ି ବନ୍ଧା—ଛେଚୁ କରୁ !


Digitised by srujanika@gmail.com

ପଞ୍ଚ—ଭୁନହ' । ଗୋଟେ କୁହାଳଆଟେ ଯେ !

ଗୁମାସ୍ତା— କଅଣ ସବୁକଥା ପଡ଼ିଯିବଟି ଏଇଠେଇ ? ଆରେ, ସଦେଇ ବାବୁତ ଆସିଛନ୍ତି !

ସଦାନନ୍ଦ—କାହିଁକ ? ମୁଁ କଅଣ ଗୋଠରୁ ବାହାର କ ?

ପଞ୍ଚ—କହେଇ ଯୋଗୁ ତ ଗାଈ ଗୁହାଳ, ସେ ନ ଆସିଲେ ଚଳିବ କେମିତି ? ସବୁକଥା ଆଉ କଅଣ ପଡ଼ିବ ଏଠି ଗୁମାସ୍ତା ବାବୁ ! ଆମର ଖାଲି ପଦେ ପଦେ ପଚ୍ଛିର ଦବା କଥା । ବସୁନାଁ ।

ଗୁମାସ୍ତା—ହାକମ ଆସିବେ ପରା ?

ଜଣେ—ମଲ, ଆଚ୍ଛା ହାକମ ହାକମ କହିଲ ତ ! ହାକମ ତେବେ ଏଇ ଭୂଇଁରେ ଜନ୍ମ ହୋଇଛନ୍ତି ବୋଲି ଫେର୍ ତୁମେ ଏଇଠି ଜନ୍ମ ହେଲ କାହିଁକ ? ବସ, ତୁମେ ତ ଏ ଗାଆଁର ଜଣେ ।

ଗୁମାସ୍ତା—ବସୁଚ, ହଁ । କହୁଚ, ହେଲେ ଏବେ ଆମେ କୋଉ ଜଣରେ ଲେଖା ? ଅସରପା ଫେର୍ ଗୋଟାଏ ଚଢ଼େଇ ? ବୁଝିଲ ଭାଇ ! କଅଣ ସବୁ ମାନ ଅପମାନ କଥା ପଡ଼ିବ ! ଆମେ ନଥିଲେ ଭଲ ହୁଅନ୍ତା ।

ପଞ୍ଚ—ଏଇ କଥା ? କିଚ୍ଛି ନାହିଁ । ଆମ ଗାଆଁ କଥା ତ । ସବୁ ଆମେମାନେ ଜାଣୁ । ପଦେ ପଦେ କଥା । ଜମିଦାର ବାବୁଙ୍କୁ ଖାଲି ପଚ୍ଛିର ଦେଲେ, ଛୁଟି । ଏପାର ନୋହିଲେ ସେପାର ।

ଜଣେ—(ପହଞ୍ଚି) ଡାକ ଆସିଲା ରଘୁବାବୁଙ୍କୁ, ଆସୁଚନ୍ତି ହେଇଟି ପଛେ ପଛେ ।

ଗୁମାସ୍ତା—(କୁଣ୍ଠିତ ହୋଇ) ମୁଁ ତେବେ···(ଉଠିଲେ)

ଜଣେ—(ଟାଣି ବସାଇ) ଆହେ, ବସ ହେ । କେତେ ମୁଁ ତେବେ, ତୁ ତେବେ ହଉଚ ? ତୁମେ କଅଣ ଏ ଗାଆଁରୁ ବାହାର କ ?

ଗୁମାସ୍ତା—ତୁନ ହ, ତୁନ ହ । (ଦୂରକୁ ଠେଲିଦେଲେ)

ସମସ୍ତେ—ଆସନ୍ତୁ ଆସନ୍ତୁ ! ଦଣ୍ଡବତ ଆଜ୍ଞା ।

ପଞ୍ଚ—ଏଇଠି ବସନ୍ତୁ । ଆମର ଏଠି ଚଉକି ଫଉକ ତ ନାହିଁ, ଦେବସ୍ଥଳୀ । ଆସନ୍ତୁ, ବସନ୍ତୁ । (ରଘୁ ପ୍ରବେଶ)

ରଘୁ—ହଉ, କାହିଁକି ସବୁ ଡାକିଲ ? ମୋର ତେଣେ କାମ ଅଛି । ଠିକଏ ଝଟ୍‌ଅଟ କଥାଟା କହିଦେଲେ ଯାଆନ୍ତା ।

ପଞ୍ଚ—ହଁ, ଆମେମାନେ ବ ତ ଅନେକ ବେଳୁ ବନ୍ଧ ହୋଇ ବସିଲୁଣି । ଖଟି ଖାଇବା ଲୋକ ! ସମସ୍ତେ ଯିବାକୁ ତରତର । ପଦେ ପଦେ କଥା ତ ।

ରଘୁ—ହଉ, କୁହ ।

ପଞ୍ଚ—ଆମ ଗାଆଁରେ ଝିମିଟି ଖେଳରୁ ମହାଭାରତ ଜାତ ହୋଇଛି । ଠାକୁର ଭୋଗଖିଆ ନେଇ ଏ କଥା ଉଠୁ ହେଲା । ଆମେମାନେ ସବୁକଥା ଜାଣୁ । ଠାକୁର ସଭିଙ୍କର । ସେ ସାନବଡ଼ ନୁହନ୍ତି, ସମାନ । ଏଇଥିକି ଆପଣ ମାମଲା ଯୋଡ଼ିଚନ୍ତି ?

ରଘୁ—ଆମର ତ ଫେର୍ ଗୋଟେ ମାନ ଅପମାନ ଅଛି ।

ପଞ୍ଚ—ସେକଥା ସମସ୍ତଙ୍କର ଅଛି ଆଜ୍ଞା । ଆପଣ ଧନେ ଜମିଦାର ଥିଲେ ବୋଲି ଆପଣଙ୍କ ଧଅଁ ବଡ଼, ଏକଥା ନୁହଁ । ଧଅଁ ସବୁରି ସମାନ । ଏବେ ଆମେ ଯାହା କହୁଚୁଁ ଆପଣଙ୍କ ଭଲକୁ । ମାମଲାରେ ମିଛ ସାକ୍ଷ୍ୟ ଦେଇଥିଲେ, ହାରିଲେ । ଓଲଟି ଆପଣଙ୍କ ନାଆଁରେ ଦୁଇଶ ଏଗାର ଚଳୁଚି । କଅଣ ଆମ ପଞ୍ଚାୟତ ନିଷ୍ପତ୍ତିକି ମାନିବେ କି ନାହିଁ ? ଏଇଆ ପଗ୍ଯରୁଚୁଁ ।

ରଘୁ—କଅଣ ନିଷ୍ପତ୍ତିଟା ଆଗ ଶୁଣେଁ ?

ପଞ୍ଚ—ଆମର ନିଷ୍ପତ୍ତି ତେବେ କହୁଚି । ସଦାନନ୍ଦ ବାବୁଙ୍କ ମାନ ପାଇଁ ଆପଣ ଧଅଁକୁ ଠଙ୍କାଟିଏ ଦେବେ, ଆଉ ସଦାନନ୍ଦ ବାବୁଙ୍କୁ ହାତ ଧରି ଡାକି ନେବେ । ଇସ୍କୁଲ ଘରକୁ ପୋଲେ ଠଙ୍କା ଭେଟି ଦେବେ ।

ଗୁରେଇ—ହଇରେ ବାପ, ଆଉ ମୋ କଥା ?

ପଞ୍ଚ—ହଁ ହଁ, ଆପଣ ଏ ଗୁରେଇ ମାଉସୀର ଜମିତକ ନେଇ ଟଙ୍କା ଦେଇ ନାହାନ୍ତି ।

ଜମିଦାର—ସେଇଟା ଡାହା ମିଛେଇ, ମୁଁ ତାର ସବୁ ପାଉଣା ଦେଇଛି । ହାକିମ ଆଗେ ସେ ଟଙ୍କା ନବା କଥା ସ୍ୱୀକାର କରିଛି କ ନାହିଁ ଦିଅଁକୁ ହାତ ବଢ଼େଇ କହୁ ତ ।

ଗୁରେଇ—ହଇରେ, ହଇରେ ! କଅଣ କହିଲୁ ? ଗୃଇଲୁ ନ୍ୟୁମ କରିବୁ ତୁ ଧଣ୍ଡା ପରସାଦ ଛୁଇଁ । କହିଲ୍—ସବୁ ଦେଇଚ ! ତୋ ମୁହଁରେ ପୋକେ—

ପଞ୍ଚ—(ବାଧା ଦେଇ) ହାଁ ହାଁ, ଏଇଟା କଳି କରିବା ଥାନ ନୁହେଁ । ପଞ୍ଚାମୃତ ବସିଚନ୍ତି, ପଞ୍ଚ ପରମେଶ୍ୱର । ତୁମେ ତୁନି ହ ମାଉସୀ । ଆମେ ସବୁ ଜାଣୁ । ବୁଝିଲେ ଆଜ୍ଞା ! ଆମେ ଗାଆଁ ଗୋଟାକ ଜାଣିଚୁଁ । ସେସବୁ ନୁହଁ । ଗୁରେଇ ମାଉସୀଙ୍କି ତାଙ୍କ ଜମି ଫେରେଇ ଦିଅନ୍ତୁ । ନଇଲେ ସେ ତ ନିଆଣ୍ଡୀ ଲୋକ । ବୁଢ଼ୀ ହେଲେଣି । କେତେଦିନ ଆଉ ତାଙ୍କ ସଂସାର ? ଠାକୁର ଘରେ ତାଙ୍କ ଖାଇବା ପିଇବା ବନ୍ଦୋବସ୍ତ କରିଦିଅନ୍ତୁ—ସେ ଖାଇଁ ଥିବାଯାଏଁ ।

ଗୁରେଇ—ନାଇଁରେ ପୁଅ, ସେକଥା କହନା । କୋଉଦିନ ବିଷ ଦେଇ ମାରିଦେବ ମତେ । ଅଣବିଶ୍ୱାସୀଟାଏ ସେଇଟା । ମୁଁ ପୁରସ୍ତମରେ ରହିବି । ମାସକୁ ମାସ ମୋ ଖରଚ ଦେଇଦେବ ସେ ।

ପଞ୍ଚ—କଅଣ କହୁଚନ୍ତି ? ମାସକୁ ବୁଢ଼ୀଙ୍କ ଖର୍ଚ୍ଚ ଦେଇଦେଲେ, ହେଲା । ଯାହା କହିବେ, କହନ୍ତୁ ।

ରିନ୍ଧୁ—କଅଣ ତୁମେମାନେ ସବୁ କଚେରୀ ଅଦାଲତ ? ତୁମେ ରାୟ ଦିବ ?

ଜଣେ—ଦଉଚୁଁ ତ, ଦବୁଁ କଅଣ ? ଆମେ ପାଞ୍ଚ ଜଣ ଯାହା କରିବୁଁ, ସେଇଆ ଗ୍ରାହ୍ୟ । ମାନିବାର ହେଲେ ମାନନ୍ତୁ—ନଇଲେ ଉଠି ଯାଆନ୍ତୁ । ତେଣିକି ଆମେ ଗାଆଁଟେ—ଆପଣ ଜଣେ । ଦେଖାଯିବ ।

ପଞ୍ଚ—ତୁନିହ, ସେଗୁଡ଼ା କି କଥା ? ବୁଝିଲେ ଆଜ୍ଞା ! ଆମେ ଯାହା କହୁଚୁଁ, ସଭିଙ୍କ ଭଲ ପାଇଁ । ଆପଣ ବିଚାରି ଦେଖନ୍ତୁ । ଆମେ ନ୍ୟାଯ୍ୟ ଦଉଚୁଁ । ମନକୁ ଆପଣ ପଚାରନ୍ତୁ !

ରଘୁ—ହଉ, ହେଲା । ବୁଡ଼ୀଟାଏ ତ ! ତମରି କଥା ଏବେ ହେଲା । ମୁଁ ଯାଉଛି, ମୋର କାମ ଅଛି ତେଣେ ।

ପଞ୍ଚ—ହେଲା ବୋଲି ତ ମୁହଁରେ କହିଲେ ହବ ନାହିଁ । ଆପଣ ଲେଖି ଦେବେ ।

ରଘୁ—ପୁଣି ଲେଖିଦବାକୁ ହବ ?

ଜଣେ—ଆଉ କଅଣ ଆଜ୍ଞା, ମୁହଁରେ କହିଦେଲେ ହବ ? ସହସ୍ରେ ଭକା—ଏକା ଲେଖା ।

ରଘୁ—ହଉ, ତୁମେମାନେ ଯଦି କହୁଚ, ଆଜି ତ ବେଳ ହେଲାଣି, କାଲି ଲେଖିଦବା ।

ଜଣେ—ଆଉ କାଲି ଆଜି କଅଣ ଆଜ୍ଞା ! ଯାହା ତୁଟିଗଲା—ତୁରନ୍ତ । ଆମେ ଜଣେ କିଏ ଯିବୁଁ, ସିରସ୍ତାରେ ଆପଣ ଲେଖିଦେବେ । ପାଞ୍ଚଜଣ ଗବା ପଡ଼ବେ, ତେବେ ସିନା । ଆଜି ସବୁ ସରୁ ।

ରଘୁ—ହଉ ହେଲା, ଆସ । (ଉଠିଲେ)

ପଞ୍ଚ—ଆଜ୍ଞା ! ଉଠି ଯାଉଛନ୍ତି କି ? ଆଉ ଟିକିଏ ଅଡୁଆ ଅଛି ପରା ?

ରଘୁ—ଆଉ କଅଣ ? ଇସ୍କୁଲ ଗୁହାଟାତ ଦେଇ ଦେବି, ଆଉ କଅଣ ?

ପଞ୍ଚ—କୋଲ୍‌ହବନ ଫେର୍ ? କିଏ ଯିବ ?

ରଘୁ—ଯିଏ ହେଲେ ଯିବ ।

ପଞ୍ଚ—ଆଜ୍ଞ ସବୁ ଭୁଟିଯାଉ, ଗଲା ।
ରଘୁ—ଆଜ୍ଞ ?
ପଞ୍ଚ—ଆଜ୍ଞା ହଁ, କବା କଥା ଆପଣଙ୍କୁ ?
ରଘୁ—ହଉ ଦେଖିବା, ଯାଏଁ ତେବେ ।
ପଞ୍ଚ—ବାକ କଥାଟା—
ଅନ୍ୟଜଣେ—ମୂଳ କଥାଟା ଛୁଡ଼ି ଯାଉଛ ଯେ ପଞ୍ଚ ଆପଣେ ।
ରଘୁ—ଆଉ କଅଣ ?
ପଞ୍ଚ—ସଭିଏଁ କହୁଛନ୍ତି, ଏଇ ସଦାନନ୍ଦବାବୁଙ୍କ ମାନ—
ରଘୁ—ହେଲା ପରା, ଇସ୍କୁଲକୁ ଟଙ୍କା ଦେବ ।
ଜଣେ—ଆଜ୍ଞା, ସେସବୁ ନୁହେଁ । ଆପଣ ସଦାନନ୍ଦବାବୁଙ୍କୁ ଡାକନେବେ । ଟଙ୍କାଟିଏ ମାନକୁ ଦେବେ । ସଫା କଥା ।
ରଘୁ—ହଉ ହେଲା, ଦେବ । ସେ ଆସନ୍ତୁ ।
ଜଣେ—ଆଜ୍ଞା, ସେ ଆସିବେ, ସ୍ବେ ଡ଼ାକବେ—ଏସବୁ କଷ୍ଟ କଥା ନୁହ । ଆପଣ ନଜେ ତାଙ୍କ ହାତଧର ଡ଼ାକ ନଅନ୍ତୁ । ଆଉ ଟଙ୍କାଟିଏ ମାନହାନି ବାବଦକୁ ଦଅନ୍ତୁ ।
ପଞ୍ଚ—ସମସ୍ତଙ୍କର ତ ଏଇ ରାୟ ଆଜ୍ଞା !
ରଘୁ—ହଉ, ସଦାନନ୍ଦ ବାବୁ ! ଆସ ଭାଇ, ଏକାଠି ଚୂଳବାନ୍ଧ ଆଉ କାହିଁକ କଳ ? ଆସ, ଆମ ଘରଆଡ଼େ ଠିକଏ ବୁଲ ଆସିବ ।
ସମସ୍ତେ—(ତାଳମାର) ହରିବୋଲ, ହରିବୋଲ । ସ୍ବେ ଯେ କଥା । ଆହୁର ଆନନ୍ଦ ଏକବାର ହରିବୋଲ । (ଉଠିଲେ)
ଗୁରେଇ—ଆଉ ମୋ କଥା ?
ପଞ୍ଚ—ଦେବେ ତ, କଥା ହେଲା । ଗୁମାସ୍ତାବାବୁ ତ ଅଛନ୍ତ । ଚାଲ, ମାଉସୀ, ଉଠ । (ସମସ୍ତେ ଉଠିଲେ) ।

———

# ଘର ଭଙ୍ଗେଇ

## ଏକ

( ଦୃଶ୍ୟ କଳ୍ପନା )

ବାଙ୍କପୁର ଗାଆଁର ଉତ୍ତରପଟେ ନଈଘାଟ । ପଥୁରିଆ ଭୂଇଁ··· ପାଣିକୁ ଲାଗି ଗୋଟିଏ ବଡ଼ ଚକାପଥର । ତାଆର ଚାରିପାଖ ଘେରି ବସିଛି ଏ ବୈଠକ । ଗାଆଁ ମାଇପେ ଠୁଳ ହୋଇଛନ୍ତି । କିଏ ଲୁଗା ହକାଉଛି, କିଏ ବାସି ହେଁସ ଧୋଉଛି, କିଏ ଗରା କଂସା ମାଜୁଛି । ଚମ୍ପି, ରମ୍ପୀ, ଗଉରା, ସଉରା,ଦୁଃଖୀନାନୀ,ରତନାମାଆ ହରିଆ ବୋଉ—ଏମିତି ପନ୍ଦର ସୋହଳରୁ ଆରମ୍ଭକରି ମାଇପୀ—କିଏ ପାଣିକୁ ଗୋଡ଼ ଲମ୍ବେଇ, କିଏ ପାଣି ଭିତରେ ପଶି, ବ୍ରହ୍ମା ସୃଷ୍ଟି କଲାଦିନୁଁ ଆଜି ପର୍ଯ୍ୟନ୍ତ ସେ ଗ୍ରେଟ ଗାଆଁ ଖଣ୍ଡିକରେ ଜୀବଠୁଁ ଶିବପର୍ଯ୍ୟନ୍ତ ସବୁକଥା ପକାଇଯାଉଛନ୍ତି । ମୁରୁଖୀ ଏମାନଙ୍କ ଭିତରେ ଦୁଃଖୀନାନୀ । ଗୋପପୁରର କୃଷ୍ଣଙ୍କ ଅମଳରୁ ସେ ନାନୀ ପଦ ପାଇଛି ଯେମିତି—ତେଣୁ ସାନରୁ ବଡ଼ଯାଏ, ପିଲାରୁ ବୁଢ଼ାଯାଏ, ସମସ୍ତଙ୍କର ସେ ନାନୀ—ବୟସ କେତେ ତାର ହିସାବ ନାଗପାଟ ହେବ । ଗାଁର ସବୁ ମାମଲାରେ ଦୁଃଖୀ ହାଜର ଥାଏ—କେହି ଡାକୁ ଡାକୁ ବା ନ ଡାକୁ, କେହି ଗୃହ୍ଣୁ ବା ନ ଗୃହ୍ଣୁ । ଗାଆଁର ନନ୍ଦ ମୂଲିଆ ରତନା ଘରଠୁଁ ଆରମ୍ଭ କରି ସାଉକାର ମଧୁ ମହାପାତ୍ରଙ୍କ ଘରର, ସୋରିଷ ଫୁଟା ଖବର ପର୍ଯ୍ୟନ୍ତ ଦୁଃଖୀନାନୀ ସପନରେ ଦେଖି ଜିଭ ଅଗରେ ରଖିଛି । ଭୁଣ୍ଡ ଟିକିଏ ଖର— ଯାହା ଦୁଆରକୁ ଗଲେ ଆଗ ପାନଖିଲେ ପାଏ । ସଂସାରରେ ଦୁଃଖୀନାନୀର କିଏ ଥିଲା, କେବେ ଥିଲା, ସେ ବାଡ଼ୁଅ କି ଗେରସ୍ତି—ସେ କଥାର ପ୍ରଶ୍ନ ଖୁବ୍ କମ୍ ଉଠେ । ଆଉ ଯଦି ବା ଉଠେ—କାନରେ କାନରେ ରହେ,

ପବନକୁ ଡର । କାଳେ ଯେବେ ଦୁଃଖୀନାମା ସୁରାଖ ବାରିବ, ତେବେ ମାଆ ବସୁଧା ସେଇଦିନ ଦିଗଡ଼ ହୋଇ ଫାଟିଯିବ । ଦୁଃଖୀନାମା ସଭିଙ୍କ ଖବର ନିଏ । ତା ଘରେ ଚୂଲି ଜଳିଲେ ସେ ଖାଏ, ନ ଜଳିଲେ ବି ପେଟ ଉପାସ ରହେନାହିଁ । ସେଇ ଦୁଃଖୀନାମା ଆଜି ବୈଠକ ମଣ୍ଡନ କରି ଚକାପଥର କଡ଼ ମାଡ଼ିବସି ଗପ ମାରୁଛି । ହାତ ଚାଲିଛି-ତୁଣ୍ଡ ଚାଲିଛି । ଅବଶ୍ୟ କେହି କାହା ସଙ୍ଗେ ତାଳ ଦେବାକୁ ରାଜି ନୁହନ୍ତି । ସବୁ ବେଖାପ—ତଥାପି ଦୁଃଖୀ ନାମାର ଦୁନିଆଁ ଠିକ୍‌ଠାକ୍ । ସେ ତାର ଅନର୍ଗଳ କହି ଚାଲିଚି । କିଏ ଶୁଣ, ନ ଶୁଣ, ବୁଝ, ନବୁଝ—ବୈଠକ ଗୁଡ଼, ଉଠି ଚାଲିଯିବାର ବହପ କାହାର ? ଦୁଃଖୀନାମା କଥାଟାର ମୂଳରୁ ଯେ ଆରମ୍ଭ କରିବ, ଏମିତି କିଛି କାରଣ ନାହିଁ । ସବୁଥିରେ ସେ ଇଚ୍ଛାମୟୀ । ଅବାଧ···ଝଞ୍ଜା । ଲୁଚେଇକରି ସେ କଥା କହେ ନାଇଁ—ସଭିଏଁ ଶୁଣନ୍ତୁ—"ଦୁଃଖୀନାମାତ କାହାରି ଖାଏ ନାହିଁ—ଧାରେ ନାହିଁ—ଡର କଅଣ ?"

ଦୁଃଖୀ—ତାଙ୍କ ସାଉକାରି ଘର ତାଙ୍କ ଘରେ, ହକ କଥାରେ ଡର କାହିଁକି ? ଗାଆଁ ଭୂଇଁରେ ଯାହା କାଳେ କାଳେ ଦେଖା ନାଇଁ, ଶୁଣା ନାଇଁ, ସେଇ ଏକା ଧନବନ୍ତ ଘର ବୋଲି ତାକୁ ପାରିଯିବ ? ହଇଲୋ ହରିଆ ବୋଉ ମାଉସି ! ତମେ ତ ମୁରୁଖା ଲୋକ, କେମେତେ ଭିନ ହେଇ ରହିଚ ମ ? ଯଦୁଆ ଯାହା ଉପୁଡଙ୍ଗର ହଉଚ, ମୁଁ ଫେର୍ ଆଖି ଦେଖିବ ନାଁ କାଳ ସହିବ ?

ରମ୍ପୀ—କୋଉ ଯଦୁଆ କଲେ ଦୁଃଖୀନାମା ?

ଦୁଃଖୀ—ମଲ, "ଯେ଼ୁ ହାଣ୍ଡିରେ ଖାଏ ନା ଗୋଡ଼ରେ ପଡ଼ିଲେ ଗାଧେଇ ଯାଏ ।" ଯଦୁଆକୁ ଭୁ ଜମା ଚିହ୍ନି ନଥିବୁ । ତତେ ଆସି ଷୋହଳ ପୂରି ସତର ହେଲାଣି ଟିଁ? ଯେ଼ୁ ଟାଆଁରେ ମଧୁ ମହାପାତ୍ର ମାହାଜନ ସାନଭାଇ ଯଦୁଆକୁ ଚିହ୍ନି ନଇଁ ? ତତ ମଗୁଣୀରରେ ପଡ଼ି ପୂ ଛୁଥୀ ଫଟେଇ ବାହା ହେଇଚ ଲୋ ! ସାଉକାରି ଘର, ସଲଖ ସୁନ୍ଦର

ଯୁଆନ ପିଲା । ପାଚିଲା ଗାମୁଛା ଖଣ୍ଡ କାନ୍ଧରେ ପକେଇ ଦାଣ୍ଡରେ ଗୁଲ ଯାଉଥିବ ବୋଇଲେ ଭଗାଗ ହେଲେ ଘଡ଼ିଏ ଗୁହିଁବ, ଆଉ ତୁ କେମେତେ ତାକୁ ଚିହ୍ନି ନଉଁ ମ ? ଏବକାଳ ଟୋକା ଗୁଡ଼ାକ ଏଡ଼କ କୁତୁରୁପୀ ହେଲଣି ? ଛ୍ୟା ଲୋ ଛ୍ୟା—ଏ ଗାଁଆରେ ଆଉ ବାସ କରି ନାଇଁ ।

ହରିବୋଉ—ହିଁ ମ, କ ମିଳିବ, ସେ ଟୋକାଟା କଥାରୁ ? କଅଣ କହୁଥିଲୁ ଦୁଃଖୀନାନୀ ! କହ ମ !

ଦୁଃଖୀ—ସେଇ ଯଦୁଆ କଥା ମ ! ଶୁଣିନଉଁ ଏବେ ? ରୋଜ ଏତେ ଖଜୁରି ବଣକୁ ଧାଉଁଡ଼ି କରିଥାଏ କାହିଁକି ମ ?

ହରିବୋଉ—ମୁଁ ତ ଦେଖିନାଇଁ ଲୋ ! କେଜାଣି କାହିଁକି ଯାଉଥିବ ।

ଫୁଲ—ଆଲୋ, ସାଉକାର ଘର ଯୋଉ ନୂଆ କଥାରି ଭଗିଁ ନାହାନ୍ତି— ଖଜୁରିବଣ ଉଆଁରେ ପରି ଲୋ ! ଖୁବ୍ ନାଗି ପଡ଼ିଛୁ ଯଦୁଭାଇ ।

ଦୁଃଖୀ—ମଲା ଲୋ ମୋ ଯଦୁଭାଇ, ଯଦୁଭାଇ-"କୋଉଦିନ ନାହିଁ, ଗହ୍ମା ପୂନେଇଁ କି ମାଇଁ ?" ତୋର ପୁଣି କି ଭାଇ ଲୋ ସେ ? ତୁ କି ଜାତି—ସେ କି ଜାତି ?

ଫୁଲ—ମଲା, ଗାଆଁ ଭୂଇଁରେ ସଭିଏଁ ଏମିତି ଡାକନ୍ତି ନାଁ ମୁଁ ଡାକିଲି ? ରମୀ ପଡ଼ଶା ଘର ରଘୁପଣ୍ଡା ଘର ଯେ—ରମୀବାପା ଜଗା ମାହାନ୍ତି ତ ବୋରବୋରି ରଘୁଆ କା', ରଘୂଆ କା' ଡାକେ । ସେ ବ୍ରାହ୍ମଣ ନୁହେ କି ସେ ମହାନ୍ତି ନୁହ । କଲୋ ରମୀ, ମିଛ କହିଲି ?

ରମୀ—ହିଁ, ସାଇଭାଇରେ ତ ସବୁଠି ସେଇଆ—ଏକାଘର ପରି ଚଳଣୀ ।

ଦୁଃଖୀ—ଆଲୋ ! ହିଁ ଲୋ ଚଳଣୀ । ଆମେ ଆଉ ଦେଖିନୁଁ ? ଆପଣା ନିଆଁ ବୋଲି ଅଣ୍ଟିରେ ଯୋଡ଼ାଇଲେ ଅଣ୍ଟି ପୋଡ଼ିଯିବ ନାଇଁ ପରି ! କହିଲା କଥାରି ଭଙ୍ଗା—ଗତ ସନରୁ ପରି କଥାରିରୁ ଖନ୍ଦ ଆମଦାମା କଲୁଣି ଲୋ ! ସେ କଥା ନୁହ ।

ହ: ମା:—ହେଇଥିବ, ଯାଉଥିବ ।

ଦୁଃଖୀ—ଯାଉଚ ପରା, ମୁଁ ରୋଜ ଦେଖୁଁ ଲୋ ମାଉସୀ ! ତତେ ମିଛ ମତେ ସତ ॥

ହ: ମା:—ଯାଉଥିବ, ଯାଉଥିବ । ଦୁଃଖୀ ଯେତେବେଳେ କହୁଚ—

ଦୁଃଖୀ—ମଲ, ପର-ପରମିଶର । ମିଛ କହି ମୋର ବଇଶି କଅଣ ? ବନା ଶିଆଳ ଗୋହିରି ମୁଣ୍ଡରେ ଠାକ ବସିଥିବ, ଉକାଉକ ହେଇ ଯିବେ ॥

ରମୀ—କେଜାଣି ଲୋ ମାଆ ! ଆପଣା ଦୁଃଖ ତ ହାଡ଼ ବାଉଣି କ ନାହିଁ । ବେଉତ ନ ଥିଲାପରି କଏ କାହା ଖବର ରଖୁଚୁ ?

ଦୁଃଖୀ—ତୋର ଯୋଉ କଥା ଲୋ ରମୀ ! ଆଖି ଆଗରେ ପଡ଼ିଲାଠଉଁ ଆଉ କଅଣ କଏ ଆଖି ମୁଦି ଦବ ?

ରତମା—ହେଇଥବ ଏବେ, ତାର କଉଡ଼ି ଅଛୁ, ସେ ମଦ ଖାଇଲା କ ତାଡ଼ି ପିଇଲା—ଆମର କ ଥାଏ ? ଚ୍ଳ ଚ୍ଳ, ବାଟରୁ ଉଠ ଲୋ ଦୁଃଖୀନାନି । ରତମା ବାପା ହାଟକୁ ଯିବ ଯେ, ମୁଁ ଗାଧୋଇ କରି ଗଲେ—

ଦୁଃଖୀ—କଲୋ ! ଯାଉନଉଁ ମୁଁ କଅଣ ତୋ ବାଟରେ କଣ୍ଟା ପକେଇଚ କଲୋ ! ମୁଁ ମୋର ନଣ୍ଡକ ପାଣି ଗାଧୋଇବି ଏବେ, ତୋର କଅଣ ଗଲା ? ସଭିଙ୍କ ବେଳକୁ ଥବୁ--ମୁଁ କଥା କହିବା ବେଳକୁ ତୋର କାମ ବହକ ପଡ଼ିବ ! ତୁ ମତେ ଏମେତେ ଦେଖିପାରୁ ନାହୁଁ କାହିଁକି ମ ?

ରତମା—ଶୁଣୁଚ ହେ ହରିଆବୋଉ ମାଉସୀ । ମୋର କାମ ପଡ଼ିଚ, ମୁଁ ଯିବି । ଏଥିରେ ଦେଖି ନ ପାରିବା କଥା ରହିଲା କୋଉଠି ? ତୋର ଯୋଉ କଣ୍ଟା ବାଉରେ କାନି ପକେଇ କଳି ଭିଆଣ କଥା !

ଦୁଃଖୀ—ଆଉ ? ନଇଲେ ତ ମୋର ଭାତ ହଜମେଉ ନ ଥିବ ?

ରତମା—ହଉ, ଉଠ, ଉଠ । ତତେ ଫେର୍ କଏ ପାରିବ ଲୋ ନାମ୍ନା ! ଡର ନାହିଁ ମୋର—ତୋ ସାଙ୍ଗେ ଭୁଣ୍ଡକୁ ଭୁଣ୍ଡ ବଜେଇବାକୁ ।

ଦୁଃଖୀ—ତତେ ବି ମୁଁ ଡାକୁନାହିଁ । ଯୋଉ ତ ମଣିଷ !! ଯା' ସାଙ୍ଗେ ଫେର କଥା ? ତୋ ଗୁଣ କଏ ଜାଣି ନାହିଁ ଯେ !

ରତମା—ହଁ ଲୋ ! ମୋ ଗୁଣ ସଭିଏଁ ଜାଣନ୍ତି—ତୋ ଗୁଣ ସଭିଏଁ ଜାଣନ୍ତି ।

ରମୀ—ପର ପୁଅ କଥା—ଆମର କାହିଁକ ବଇଶି ପଡ଼ିଚ ? ଚାଲ ଲୋ ରତମା ଅପା ! ଯଦୁଆ ଭାଇ ଶୁଣିବ ବୋଇଲେ କଅଣ କହିବ ଭଲ ?

ଦୁଃଖୀ—କଇ ଲୋ । ଯଦୁଆ ଭାଇ ପାଇଁ ଗୁଣ୍ଡିରୁ ରକତ ଝରି ପଡ଼ୁଚି ତ ! ଯା, ଯା, ତୁ ଏବେ ଭଲେଇ ହେଇ ତାକୁ କହିବୁ ଯା । ମୋତେ ଗାଆଁରୁ ନିକାଲି ଦବ ।

ରମୀ—ମଲୋ, ମୋର କ ବଇଶି ପଡ଼ିଚ ମ ! ଚାଲୁ ନୁ—କାହିଁକ ମ ରତମା ଅପା ! ଏଠି ଥିଲେ ବାର ନାଟ ନାଗିବ—(ମିବା ପାଇଁ ଚାଲିଲେ)

ଦୁଃଖୀ—ମଲୋ, ଯେଉଁକ ଚାଲ ମ ? ପାଣି ଚୁରିକ ଉପରେ ପଡ଼ୁଚି । କଲେ !- ସାନ—ବଡ଼ ମାଇନ ବୁଡ଼ିଗଲା କଲେ ! ଏତେ ଫରଫର ହ ନେଇ ମ ! ଦଇବ ଅଛି ଲୋ । ବଅସ ଗରବ କାଳ···କାଳକୁ ଥିବ ନାହିଁ ମ !

ରମୀ—ଦେଖୁଚ ସବୁ ! ମୁଁ କୋଉଠି—ସିଏ କୋଉଠି—କଅଣ ନାଁ ପାଣି ପଡ଼ିଲା । ସପୁଁ ଚ ମତେ ? କୁଳ ମୂଳରେ କେହି ନ ଥାଇ ତ ଏମେତେ । ଆଉ ଯେବେ କଏ ଥାଆନ୍ତା—

ଦୁଃଖୀ—ହଇଲୋ ! କଅଣ କହିଲୁ, କଅଣ କହିଲୁ ? ମୁଁ ଦୁଃଖୀଟି, ଚହିଁଚୁ ମତେ ? ଆଲୋ, ମୋର ଥେଲେ ନ ଥେଲେ ତୋର କଅଣ ଗଲା ? (ରମୀ ଚାଲିଗଲା କହି କହି)

ହ: ମା:—ଆଲୋ ! ଥାଉ ଲୋ । ଗାଧୋଇକର ତ ଯିବ । ଏତେ କଥା କାହିଁକ ? ଟୋକୀଟା—କଅଣ ପଦେ କହିଦେଲା ଯେ, ତୋ ଦିହ ଛୁଣ୍ଡି ଯାଉଚି ? ବ'ସ ।

ଦୁଃଖୀ—ଯା' ଯା'ରେ ଲୁଣ୍ଡ । ଗୁଲତ ଗଲୁ ଲୋ ଟୋକା ! କଥା ପଡ଼ି ଆସୁଥିଲା—ଏ ହଣଆଟବୋଉ ମାଉସୀ ! ତାଆର ପାଇଁ ପର କଥା ଉଆଁ ଉଥିଲ । ଯଦୁଆ କଅଣ ତା ଭାରିଜାକୁ ଦେଖିପାରୁଚ କି ? ନୂଆ ବୋହୂ ଟା—ସବୁବେଳେ ପର କଣରେ କାନ୍ଦୁଚ ଲୋ ମାଉସୀ ! ଏଇ ରମୀ ସବୁ ନାଟର ଗୋଡ଼ । ଦେଖିଲ ନାଇଁ, କେମେତେ ବାହାର ପଡ଼ିଲା—ଯଦୁଆ ନାଆଁ ପଡ଼ିଲେ, ସିଏ ଆଉ ସମ୍ଭାଳୁଚ ? ଭୂଆଷୁଣୀ ଝିଅ—ଯେ କି କଥା ଲୋ ! ଯଦୁଆଭାଇ —ଯଦୁଆଭାଇ ! କଅଣ କହନ୍ତୁ ନାଇଁ କଥାରେ—"ଲୁ ଯୋଉଥିକ ନସର ପସର ଆମେ ସେ କଥାଟି ଜାଣି ।"

ଫୁଲ—ଆଲୋ, ଲୁନ ହ ଲୋ ନାନୀ । କଏ ଦେଖିଚ ନା ଶୁଣିଚୁ ? ଲୁ କାହିଁକି ଏଗୁଡ଼ା ସବୁ ବଢ଼ାଇ ହଉଥାଉ ଭଲା ?

ଦୁଃଖୀ—ମଲା, ଦେଖିଚ; କହିବ ନାଇଁ ? ଭୂଆଷୁଣୀ ଟୋକୀଟା—କାଲିକି କାଲି ଶାଶୁଘର ହବ । ପଞ୍ଚୁ-ଦୋଳକୁ ଫଗୁ ଫିଙ୍ଗାଫିଙ୍ଗି ହଉଥିଲେ—ଆଉ ଆଜ କେତେ ଏମେତେ ସବୁ—

ହ:ମା—ଆଲୋ ! ଲୁନହ । ଗୁଲ, ଗାଧୋଇ କରି ଘରକୁ ଗୁ' । ବେଳ ଦିଶୁନାଇଁ ? ଫେର୍ ରନ୍ଧାବଢ଼ା କରିବୁଟି ? କେହି ନଥିଲେ ଆପଣା ପେଟ ତ ପାଟଣା । ଫୁଲ ! ପାଣିରୁ ଉଠିବୁ ନାଇଁ କଲୋ ଆଜି ?

ଫୁଲ—ହଁ ଲୋ ମାଉସୀ ! ଏ ଦୁଃଖୀନାନୀକଥା ଶୁଣୁଥିବ-ବୋଇଲେ ତ —( ଦୁଃଖୀପ୍ରତି ) ଗାଧୋଉନଉଁଲୋ ଦୁଃଖୀନାନୀ !

ଦୁଃଖୀ—ମୋର ବେଳ ହେଇନ—ତମେ ସବୁ ଯା । ମତେ କୁଆ ପରି ବୁଡ଼ି ଆସେ ନାଇଁ ।

ହ: ମା:—ଆଲୋ,ଏ ଫୁଲ, ମାଠିଆଟାରେ ନଈଭିତରୁ ମନ୍ଦେ ପାଣି ଆଣିଲୁ । ପାରୁନାଇଁ ଲୋ ଝିଅ ! ବଳଗଲା-ବଅସ ଗଲା ।

ଫୁଲ—ନଉଚ ।

ଦୁଃ ମାଃ—ଆଣ, ଆଣ । ଶୁଖକୁ ଆଣି ଦେ ଝିଙ୍କଏ । ଏ ମାଠିଆଟା ଡ଼ାଳଦେ'କ ଆଉ ଥରେ ପୁରେଇ ଆଣ । ଗୃଲମ ସବୁ ।

( ପାଣି ଡାଳଲ )

ଫୁଲ—ଗୃଲ୍ ମାଉସୀ । (ଗୃଲଗଲେ ସଭିଏଁ)

ଦୁଃ ମାଃ—ଥାଉ ଲୋ ଦୁଃଖୀନାମା ! ଆମେ ଆଗରେ ବାହାର ଯାଉଁ । ପାଣି ନେଲେ ବୋହୂ ଭାଉଆଣୀ ବସେଇବ ।

ଦୁଃଖୀ—ଯାଉ ନା, ସବୁ । ମତେ କଅଣ ଭୁଠରେ ଜ୍ୱର ମାଲୁଚି ? ଯା !

ମଧୁମହାପାତ୍ରଙ୍କ ସ୍ତ୍ରୀ—( ଦୂରରୁ କହି କହି ଆସିଲେ ) ଲଏ, କଏ ବଇଚ ଚକାପଥର ଉପରେ ? ଦୁଃଖୀ ନାମା କଲୋ !

ଦୁଃଖୀ—ଆଲୋ ବଡ଼ ବୋହୂ ! ଆଜି ଏତେ ଡେରିକର ? ତମେ ତ କାଉ କା' ନକରୁଣୁ ଗାଧୋଇ ସାରଥା । ମାହାପାତ୍ରେ କଅଣ ଆଜି ପାରିଶୁଆ ଗ୍ଲାଡ଼ ନଥିଲେ କି ଏତେବେଳ ଯାଏ ?

ବଡ଼ବୋହୂ—ମଲା ଲୋ, ପୋଡ଼ଯାଉ ତୋ କଥା—ସେ ତ ସାତ ସକାଳୁ ଉଠି, ଗାଧୋଇ ପାଧୋଇ ଗୋଦାମକୁ ଗଲେଣି । ଆଜି ପରା ହାଟ ?

ଦୁଃଖୀ—ଫେର୍ ତୋଷାଣୀ କଏ ବାଡ଼ିଲା ମ ?

ବଡ଼ବୋହୂ—କାହିଁକି, ସାନବୋହୂ ବାଢ଼ିଦେଲା—ମୁଁ ଡ଼ାକଦେଲ ।

ଦୁଃଖୀ—( ହସି ) ମୁଁ ବୋଇଲ କି, କେଜାଣି ଆଜକାଲି ମାହାପାତ୍ରେ ବଡ଼ବୋହୂକୁ ପାଖଛଡ଼ା କଲେଣି ପରା !

ବଡ଼ବୋହୂ—ତୋ ଭୁଣ୍ଡଟା ବଡ ଅଲଣା ଲୋ ଦୁଃଖୀନାମା । ନଇକି ବାହାରିବ ଏତିକିବେଳେ ସାନବୋହୂର ଭାଇ ଆସି ପହୁଞ୍ଚିଲା ଯେ, ମଠ ହେଇଗଲା ।

ଦୁଃଖୀ—କଅଣ ସବୁ ଭାରଥୋର ଆଣି ଆସିଚ ?

ବଡ଼ବୋହୂ—ହଁ, ସେ ତ ଖାଲି ହାତରେ ଆସନ୍ତି ନାହିଁ । ଯେତେ ମନା କଲେ ଗୁଡ଼ହାଣ୍ଡି ଆଣିଥିବେ । ହାଟରୁ କଅଣ ରବ କିଣିବେ ଯେ, ଶଗଡ଼ ବଳଦ ନେଇ ଆସିଛନ୍ତି । ତା ସାଙ୍ଗରେ ଏଡ଼େ ଏଡ଼େ ଗୁଡ଼ହାଣ୍ଡି—

ଦୁଃଖୀ—ସାନବୋହୂଟି କେମେତେ ?

ବଡ଼ବୋହୂ—ଭଲ ପିଲାଟିଏ ତ ! ତୁ ତ ଯାଉ, ଜାଣୁ ନଥିବୁ ?

ଦୁଃଖୀ—ତା ବୋଲିବାକୁ ମାସ ଛଅଟା ତ ହବ, ଆଇଲା । ଭଲମନ୍ଦ କଅଣ ବାରିବା ? ମୁଁ ଗଲେ ପାନ ଦଖଣ୍ଡ ଥୋଇ ଦେଇ କଣରେ ପଶିବ । ଯଦୁ ତାକୁ ଦେଖି ପାରୁଛନ୍ତି ?

ବଡ଼ବୋହୂ—ମଲା, ବୋହୂ କୋଉ ଅଗୁଣରେ ନାଁ ଅସୁନ୍ଦର ଯେ ! ମୁଁ ତ ନିଜେ ଯାଇ ଦେଖି ଆସିଥିଲି ତା ବାପଘରେ ।

ଦୁଃଖୀ—ହଁ, ସେଇକଥା ! ଯେମେତେ ସୁଧରମ—ମାଛି କି ମ କହନ୍ତି ନାହିଁ । ବଡ଼ ଭାଇଙ୍କ ତ ବାପପରି ମାନୁଥା'ନ୍ତି । ଆଉ ତମେ ତ ମାଆରୁ ବଳି । ପିଲାଦିନୁ ତ ଏଇ ଗାଆଁରେ ଦେଖି ଆସୁଚ, ମୋଠୁ କେତେ ବଡ଼ କି ? ଦ' ବରଷ ତ ହେବେ ।

ବଡ଼ବୋହୂ—ଏଡ଼େବଡ଼ ଭେଣ୍ଡା ହେଲେଣି—ତାଙ୍କର ସେଇ ଅଳିଅଝଳି ମୋ ପାଖରେ । କାଲି ରାତିରେ ପଗା ଧରି ବସିଲେ, ନୂଆବୋହୂ ତମେ ଅଧାର ମଣ୍ଡା ନକଲେ, ମୁଁ ଖାଇବି ନାହିଁ । ବଡ଼ଭାଇ ଶୁଣି ହସିଲେ, କଅଣ କରିବ ? ନଡ଼ିଆ ପୁର କରି ଫେର ମଣ୍ଡା ତିଆରିଲି, ତେବେ ଯାଇ କଅଣ ।

ଦୁଃଖୀ—କାହିଁକି ? ସାନବୋହୂ ?

ବଡ଼ବୋହୂ—ମଲା, ସେ ତ କାଲି ଆସିଛି । ତହିଁରେ ପୁଣି ଯଦୁଙ୍କ ପିଢ଼ା ପଗା ! ମୋ ହାତ ପିଠା ସୁଆଦ ?

ଦୁଃଖୀ—ସାନ କଅଣ ହାଣ୍ଡିଶାଳେ ପଶିନାହିଁ ଆଜି ଯାଏ ?

ବଡ଼ବୋହୂ—ହଁ, ଭୁଜଣ—ତରକାରି ଏବେ ସେଇ ଗାନ୍ଧୁଟି । ଲୁଣ ପାଣି ଠିକଣା କରିଦଉଚି । ସବୁ କରି ଜାଣୁଚି ।

ଦୁଃଖୀ—ଯଦୁଙ୍କୁ ଫେରି ସୁଖ ନାଗୁଚି କି ନାଇଁ କେଜାଣି ତା' ଗାନ୍ଧଣା ।

ବଡ଼ବୋହୂ—ଯଦୁଙ୍କ ଭାଇ ତ ତାରିଫି କରୁଛନ୍ତି ବୋହୂ ହାତରନ୍ଧାକୁ । ଯଦୁ ଆଉ କଅଣ କହନ୍ତେ ?

ଦୁଃଖୀ—ଓହୋ ! ସେତ ଗାଆଁ ଖଣ୍ଡିକ ତ ପୃଥିବୀରୁ ବାହାର ।

ବଡ଼ବୋହୂ—କାହିଁକି ମ ?

ଦୁଃଖୀ—ଏଇନେ, ସେ ରମୀ ଗାଧୋଇ କରି ଗଲା ଯେ—ଯଦୁ କଥା କହୁଥିଲା । ବୋହୂକୁ ଦେଖି ପାରୁନାଇଁ—ବୋହୂ ହାତ ରନ୍ଧା ସୁଖ ପାଉନାହିଁ—କେତେ କଥା ଯେ ନଗେଇଗଲା । ମୁଁ ତ ଦୁଃଖୀନାମୀ—ଦେଲି ପରସ୍ତେ ଛାଡ଼ି ।

ବଡ଼ବୋହୂ—ମଲା ! ରମୀ ତ ସବୁବେଳେ ତା ସାଥୀରେ ଚଳବଚଳ ବୋହୂର ତା'ର ପାଣି ଗଳୁ ନାଇଁ । ଏକଥା ଫେର୍ କେମେତେ କହିଲା ମ ?

ଦୁଃଖୀ—ସେଇଆ ପରା ! ପୁଣି କଅଣ ନାଁ ଯଦୁଟା ଏମେତେ ସେମେତେ । ତୁମେ କୁଆଡ଼େ ଆଗବେଳ ପରି ଆଉ ଦେଖି ପାରୁନା ତାକୁ ।

ବଡ଼ବୋହୂ—ମଲା, ଏଡ଼େ ଛନ୍ଦ ରମୀ ଟୋକି ଖଣ୍ଡେ ନାଁ ସିଏ ?

ଦୁଃଖୀ—ମହାକାଳ ଫଳ—ବାହାର ସୁନ୍ଦର—ଭିତର ପୋଡ଼ା ଅଙ୍ଗାର । କାହା ଘରକୁ ଯିବ ଲୋ ମାଆ, କେଜାଣି । ପକ୍କା ଘରଭଙ୍ଗେଣ୍ଡି ହବ ।

ବଡ଼ବୋହୂ—ହଁ, ତାଙ୍କରିମାନଙ୍କ କଥାରେ କଅଣ ମୁଗ ମୁଗ ହେଇ ଯାଉଚି ?


Digitised by srujanika@gmail.com

ଦୁଃଖୀ—ତେମେ ତ ପକ୍‌କା ମଣିଷ । ତମ ଆଖିରେ ବଳେ ପଡ଼ିଯିବ ନାଇଁକି ! ବାଉବଟି, ମୋ କଥା ସତ କି ମିଛ ।

ବଡ଼ବୋହୂ—ସବୁଦିନେ ତ ଦିହ ପହରକୁ ରମୀ ଆସେ ଆମ ଘରକୁ ।

ଦୁଃଖୀ—ଏଇନେ କିଛି ନକହ କଥାଟା ଆଗ ବାଉନିଅ ।

ବଡ଼ବୋହୂ—ତୋ ଗାଧୁଆ ସରିଚି ?

ଦୁଃଖୀ—ସାରିଚି ଯେ, ବାହାରି ତ ଥିଲି । ତମକୁ କଅଣ ଏକୁଟିଆ ଛାଡ଼ିଯିବି ? ସାର ।

ବଡ଼ବୋହୂ—ମୋର ସଇଲାଣି । ଯିବୁ ଯେବେ ଆ ।

ଦୁଃଖୀ—ପାଣିଟାଏ ନଏଁ । (ଗରାରେ ପାଣି ଭରନ୍ତି କଲେ) ମୁଁ ଆଜଯିବି ହେ ବଡ଼ବୋହୂ ! ସାନବୋହୂ ଘର ଦ୍ୱାର ଦେଖି ଆସିବି ।

ବଡ଼ବୋହୂ—ମଲା, ଆସୁନଉଁ । କଏ ନୁହେଁଉଚି କି ତତେ ? ଚାଲ ଏଇବାଟେ ହେଇଯିବୁ, ଦେଖିବୁ-ଝୁଣିବୁ, ସବୁହବ ।

ଦୁଃଖୀ—ଆହା ! ସଂସାରେ ଆଉ କଅଣ ଥାଏ ? ବଚନ ପଦକତ ! ଚାଲ ଯିବା ।

ବଡ଼ବୋହୂ—ହଁ । (ଦୁହେଁ ଚାଲିଗଲେ) ।

---

## ଦୁଇ

( ଘର ଭିତର )

ରମୀ—ସତେ, ସାନବୋହୂ, ନାଜବଣ୍ଟା ବେଳେ ତେମେ କଅଣ ବଡ଼ କରି ଅଣ୍ଟିଟେ ପତେଇଥିଲ କି'ମ ?

ସାନବୋହୂ—କାହିଁକି ଏକଥା କହୁଚ ରମୀ ?

ରମୀ—ନୋଇଲେ, ତମେ ଆସି ଥୁଆପୁରୁଣା ହେଇଗଲେଣିଟି ? ବରଷକୁ ନାଗ ପାଟ ଧଇଲା—ସେଇ ନାକ ଓଡ଼ଣା ଗଲା ନାଇଁ ତ !

ସାନବୋହୂ—ଆଉ କଅଣ ଦାଣ୍ଡରେ ଠିଆ ହୁଅନ୍ତ ? ଭଲ କଥା ତ !
ମାଇପି ଲୋକଙ୍କର ଲାଜ ସିନା ଭୂଷଣ ! ଆଉ ତମ ଗାଆଁରେ,-
କଅଣଟି ତାଙ୍କ ନାଆଁ ? ଆସୁ ନାଇଁମ-ଅଗ ଜିଭରେ ଅଛୁଟି ।

ରମୀ—କଅଣ ଏଇ ଦୁଃଖୀନାମା କଥା କ ?

ସାନବୋହୂ—ହଁ, ହଁ । କ ଖରଖର ସେ ହେଇଚନ୍ତ ଲୋ ମାଆ !

ରମୀ—ସେ ତ ଖଣ୍ଡେ ବଜୁଳୀ । ତା'ଭୁଣ୍ଡକୁ ଗାଆଁ ଯାକର ଡ଼ର । ଆଜି
ପରା ନଈକୂଳେ ତା' ମୋ ଖଣ୍ଡେପଟେ ନାଗି ଯାଇଥାନ୍ତା । ମୁଁ
କେମେତେ ଆସିବ, ରାହା ଦୁଶିଲା ନାଇଁ ନଈକୂଳରୁ ।

ସାନବୋହୂ—କାହିଁକି, କଅଣ ହେଲା କ ?

ରମୀ—ମଲା, ସଜ ମାଉଁସରେ ପରା ଅଂସେଇ ପକେଇ ଦବ ସେ । ଗୁଣ୍ଡ
କହି ବସିଲେ—ବଡ଼ ନୂଆବୋହୂ ଶୁଣିବେ ଏଇନେ ବୋଇଲେ
କଥା କାହିଁରୁ କାହିଁଯାକେ ଯିବ । କ ମିଳବ ସେ ଗୁଣ୍ଡାକରୁ ?

ସାନବୋହୂ—ତାଙ୍କର ଆଉ କିଏ ଅଛୁ ?

ରମୀ—ତା'ର ବାପାମା'ତ କୋଉ କାଳୁ ଗଲେଣି । ଭାଇ କ ଭଉଣୀ
କେହି ନାହାନ୍ତ ।

ସାନବୋହୂ—ବାହା ହେଇ ନାହାନ୍ତ ?

ରମୀ—ତା ମନକୁ ପାଇଲେ ତ ! ବର ତା ମନକୁ ଆସୁନାଇଁ, ଇଜ୍ଜାବର
କରିବ ପରା ସେ । ତେହିଁକି ଗଙ୍ଗାରେ ଯେ ଦାଢ଼ିଥିବ, ସେ ସିନା
ତାକୁ ନବ !

ସାନବୋହୂ—ଫେର ତ କୋଉଠି ହେଲେ ହାତକୁ ଦ'ହାତ ହବ ।
ମାଇକିନିଆ ଝିଅ । ଆଉ କଅଣ ବଅସ ଆସୁଚ ? କୋଡ଼ିଏ
ବାଇଶି ବରଷ ହବ କ କଅଣ ?

ଦୁଃଖୀ (ନେପଥ୍ୟରୁ)—ସାନବୋହୂ କଅଣ ଏଇ ଘରେ ଅଛୁ
ବଡ଼ବୋହୂ ?

ଘର ଭିତରୁ, ବଡ଼ବୋହୂ—ହଁ ହଁ, ସେଇଘରେ ।
ରମୀ—ହେଇଟି ଲୋ ! ଭୂଇଁରୁ କଥା ସରନାଇଁ—ଦୁଃଖୀନାନୀ ତ—
ସାନବୋହୂ—ଦ' ଡିମଥରୁ ଆଇଲେଣି । ତାଙ୍କୁ ଦେଖିଲେ କେମିତି—

( ଦୁଃଖୀ ପ୍ରବେଶ )

ଦୁଃଖୀ—ସାନବୋହୂ, କଅଣ କରୁଚ କି ? ଏଇ ଘରେ ଅଛଟି ? ମଲ୍, ଏଇଠି ରମୀ ତ ଅଛି । ହଉ ହଉ ଥା—
ରମୀ—ଆସୁନାଇଁ ଲୋ ଦୁଃଖୀନାନୀ—ଆ ।
ଦୁଃଖୀ—ତମେ କଅଣ ବସି କଥା ହଉଚ, ଧୁଅ ।
ରମୀ—କଥା ଆଉ କଅଣ ମ ? ନୁଆଁ ଦେହକୁ କଷ୍ଟ ନୁହ । ବସି ଦୁଃଖସୁଖ ହଉଥିଲୁଁ ଆ, ବ' ।
ଦୁଃଖୀ—ନାଇଁ, ବ' ବ'—ଆଇଲି ଘ'ର ଠିକଏ ସାନବୋହୂର ଘ'ର ଦେଖିବାକୁ ଯେ ! କାଇଁ ଲୋ ଘର ?
ରମୀ—ଘର କଥା ସେ କି ଜାଣେ ମ ? ରଖାମଣା ସିନା ବଡ଼ ନୂଆବୋହୂ କରନ୍ତି । ସେ ଖାଲି ସାକ୍ଷୀଗୋପାଳ ।
ଦୁଃଖୀ—ହଁ, ହଁ, ସତେ ! ବଡ଼ବୋହୂଙ୍କୁ ପଚାରେଁ । ଯାଉଚି ( ପ୍ରସ୍ଥାନ )
ରମୀ—ଦେଖୁଛ ତା ପରକୁତି ! ଆଲୋ, ଘରେ ବଡ଼ ହେଲା ମୁରବି ! ଘର-ଥୋର—ବୁଝିବାକୁ ସାନ କିଏ ମ ? କି ଅକ୍‌କଲ ?
ସାନ—ସେଇଆ ପରା ।
ବଡ଼ବୋହୂ—ଏ ଘରେ କିଏ—ରମୀ ଅଛି କି ?
ରମୀ—ହଁ ହେ, ବଡ଼ ନୂଆବୋହୂ, ଏଇଠି ସାନ ନୂଆବୋହୂ ସାଙ୍ଗରେ ବସି ଦୁଃଖସୁଖ ହଉଚୁଁ ।
ବଡ଼ବୋହୂ—ତମର କଅଣ ଆଉ ଘରେ କିଛି କାମ ନଥାଏ ରମୀ ! କଅଣ ବସି ଦହିପଖାଳପାକ ଟୁପୁରୁ-ଟାପର ଫୁସୁରୁ-ଫାସର ହଉଥାଅ, ସବୁଦିନେ ମ !

ରମୀ—ସବୁ କାମ ସାରି ଦେଇଥାଏଁ । ଦୁଇପହରେ ତ ଶୁଅନ୍ତି । ସାନ ନୂଆ-
ବୋହୂଟି ଏକୁଟିଆ ଥାଏ ବୋଲି, ବସୁଁ-କଥାହଉଁ ।
ବଡ଼ବୋହୂ—ହଁ, କଥା ହୁଅ, ନାଁ ମନ୍ତର ଦିଅ ମ ?
ରମୀ—ମନ୍ତର ? କି ମନ୍ତର—କିଏ ବଡ଼ ନୂଆବୋହୂ ?
ବଡ଼ବୋହୂ—କେଜାଣି, ତମେ ଜାଣି ନଥିବ ! ହଉ, ହଉ, ଯା, ଘରକୁ
ଯା—ସାନବୋହୂର କାମଅଛି ।
ରମୀ—ସାନ ନୂଆବୋହୂ, କଅଣ କଥା କଲେ ?
ସାନବୋହୂ—ମୁଁ ତ କାବା ହେଇଗଲିଣି । ଅପା ଆଜି ଏମିତି କଅଣ
କହୁଛନ୍ତି କେଜାଣି ?
ରମୀ—ଦୁଃଖୀ ଛତରି କଅଣ ନଚେଇ ବଚେଇ କହିବଣି । ହଉ, ମୁଁ
ଯାଉଛି ସାନ ନୂଆବୋହୂ ! ମନେ କରୁଥିବ ।
ସାନବୋହୂ—କାଲି ଆସିବ ନାଇଁ ? ଏକୁଟିଆ ଜାଲରେ ପଇଲି ପରି
ଲାଗୁଚ ।
ରମୀ—ଦେଖିବ, କଅଣ ହଉଚ । ଦିନେ ନାଇଁ—କାଲେ ନାଇଁ, ଆଜି
ଯେ କି କଥା ବଡ଼ ନୂଆବୋହୂର ? ଯାଉଚ, ଥା ।
ସାନବୋହୂ—ଆସିବଟି ରମୀଦେଈ ! ତମକୁ ମୋ ରାଣ ।
ରମୀ—( କାନ୍ଦିଲା ପରି ) ଦେଖିବ, ରାଣ ପକାଅ ନାଇଁ ( ଚାଲିଗଲା )
ବଡ଼ବୋହୂ—ରମୀ, କଅଣ କହୁଥିଲା କି, ସାନବୋହୂ ?
ସାନବୋହୂ—କଛି ନାଇଁ ତ ।
ବଡ଼ବୋହୂ—କଛି ନାଇଁ ତ ? କାନ କଅଣ ପୋଡ଼ି ଯାଇଛି ଲୋକଙ୍କର ?
ମୁଁ ବଡ଼ବୋହୂ ଘରର । ମୁଁ ଦେଖାଶୁଣା କରନ୍ତି ନାହିଁ, ଆଉ
କିଏ କରନ୍ତା ?—କଅଣ ରମି କରନ୍ତା ? ଯେ ଘରଭଙ୍ଗା
କଥାଗୁଡ଼ା ଆସି କାନରେ କହୁଚ । ପକ୍କା ଚୁପୁସିଟିଏ ଯେ ।
ସାନବୋହୂ—ସେ ତ ଏମିତି କଛି କଥା କହି ନାହାନ୍ତି । ଓଲଟି—

ବଡ଼ବୋହୂ—ହଁ, ହଁ, ମୁଁ ସବୁ ଜାଣିଛି—ସବୁ ଶୁଣିଚ । ଘର ଭଲଟିଏ ସିଏ । ଆଉ ଦିନେ ଆସୁକ—ତା' ମୋ କଥାବାର୍ତ୍ତା ସିନା ! ଘର ଭଙ୍ଗେଈ ଟୋକା, ତୁ ତା'ସାଙ୍ଗେ ହେଲମେଳ ହବୁ ନାହିଁ । ଯଦୁ ଆସିଲେ ମୁଁ ଆଜ କହିଦଉଚ । ଚାଲ୍, ବେଳ ହେଲଣି, ମୁଣ୍ଡିଟା ବାନ୍ଧି ଦିଏଁ, ଏଇନେ ସବୁ ହାଟରୁ ବାହୁଡ଼ିବେ ।

( ପ୍ରସ୍ଥାନ )

---

## ( ତିନି )

ସ୍ଥାନ—ନଦୀକୂଳ । (ପଥର ଉପରେ ଲୁଗା କାଚୁଛି ଦୁଃଖୀ । ଯଦୁ ପ୍ରବେଶ)

ଯଦୁ—ହାଁ, ହାଁ, ଟିକିଏ ଆସ୍ତେ । ଦିହରେ ପାଣି ପଡ଼ିବ ।

ଦୁଃଖୀ—( କଚ୍ଚ ବନ୍ଦ କରି ) କିଏ ଯଦୁଆ ଭାଇ କି ?

ଯଦୁ—ଆଲୋ ହଁ, ତୁ ତେହିଁକି ଲୁଗା କାଚିବୁ ବୋଲି କଅଣ ତାକୁ ବାଡ଼େଇ କରି ଛିଣ୍ଡେଇବୁ ? ଭାଗ୍ୟକୁ ତ ତତେ ଚକାପଥର ଖଣ୍ଡେ ମିଳିଛି । ତୁ ଆଉ ଜନମରେ ଧୋବଣୀ ହୋଇଥିଲୁ କି କଅଣ ?

ଦୁଃଖୀ—( ହସି ) ଧୋବଣୀ ହେଲେ କିଏ ପଚ୍ଚାରୁଛି ନା ଚୁଷୁଣୀ ହେଲେ କିଏ ପଚ୍ଚାରୁଚ ?

ଯଦୁ—ତୋର ପୁଣି ପଚରା ଉଚରା କଅଣ ? ପଚ୍ଚାରିଲେ ତୁ ଅଛୁ, ନ ପଚ୍ଚାରିଲେ ବ ତୁ ଅଛୁଁ ।

ଦୁଃଖୀ—ସେଇଥିକି ପରା ତୁମେ ଟିକିଏ ତୁଣ୍ଡେ ପଚ୍ଚାର ନାହିଁ ।

ଯଦୁ—ପଚ୍ଚାରିଲି କେମିତି ତେବେ ?

ଦୁଃଖୀ—ହଁ, "ବାଟରେ ଦେଖିଲି କମାର ନାଁ ନୁହା ପକେଇ ଦେ ଆମର ।" ଯାକୁ ପଚରା କହନ୍ତି ?

ଯଦୁ—କାହିଁକି, ଯେତେବେଳେ ଦେଖିଲେ ତ ତତେ ଫଗୁଚେଁ । ତୁ ଖାଲି ଦୋଷ ଦଉଚୁ, ନାଁ ?

ଦୁଃଖୀ—ବାହା ହେଲ, ସାହା ହେଲ, ଭଲ ଦୁଃଖୀକି ଲୋଡ଼ିଥିଲ ?

ଯଦୁ—ସେ ସବୁକଥା ଭାଇ ଭଉଜ ଜାଣିଥିବେ ନାଁ--ମୁଁ କଅଣ ଘରର ମୁରବି ?

ଦୁଃଖୀ—ହଉ, ଯାଉ ସେ କଥା । ପୁରୁଥୀ କମେଇ ବାହାହେଲ, ଭଲ ହେଲ । କହିବଟି, ବୋହୂଟି ମନକୁ ପାଇଲା କି ନାହିଁ ।

ଯଦୁ—କାହିଁକି, ତୁ କଅଣ ଦେଖିନଉଁ ?

ଦୁଃଖୀ—ହଇ, ଓଢ଼ଣା ତଳୁ କି ଦେଖା ସେ ?

ଯଦୁ—ମଲା, ତତେ କଅଣ କଏ ନୁଚଉଚି ?

ଦୁଃଖୀ—ଆଲୋ ମାଆଲୋ ! ତମର ଯୋଉ ନୂଆବୋହୂ—

ଯଦୁ—କଅଣ ଖଣ୍ଡାରେ ହାଣି ପକାନ୍ତ ? ଯାଇକରି ଦେଖିସାରି, ସେଇଠୁ କହିବୁ । ଏଇ ଦପହର ଖରା—ମୁଣ୍ଡ ଫାଟି ଯାଉଚି । ଏଇଥେରେ ବସି ମୁଣ୍ଡଟାକୁ ଦେଖେଇ ଲୁଗା କାଚୁଚୁ ? ରନ୍ଧାବଢ଼ା ଆଜି କରିବୁ ନାଇଁ କିଲୋ ?

ଦୁଃଖୀ—ପେଟକୁ ଡାଡ ନାଇଁ ଆଜି ।

ଯଦୁ—କାହିଁକି ମ ? କଅଣ କାଲି ଅଜଗର ପରି ଗିଳିଚୁ କି ?

ଦୁଃଖୀ—ନାଇଁ ଯେ, ଅଧାଖାଇ, କାଲିଠୁ ଅଧାରଖି ଦେଇଚି ।

ଯଦୁ—କଅଣ ଭଲ ରକମ କରିଥିଲୁ କି ?

ଦୁଃଖୀ—ଆ, ମୁଁ କରିଥିଲି । ଅକାଳେ ସକାଳେ ଦିନେ ମିଳିଗଲା ।

ଯଦୁ—କଅଣ ମ ?

ଦୁଃଖୀ—ଖଜା, ପିଠା, ମୁଆଁ, ଉଖୁଡ଼ା । ତମ ଶାଶୁଘର ତ ଭଲ କରି ଜାଣନ୍ତି । ବୋହୂ ଶିଖିଥିବ ନା ?

ଯଦୁ—ଓହୋ ! ଆମ ଘରକୁ କାଲି ମୋ ଶଳା ହେଉକା ଆସିଥିଲେ ଯେ, ଭାଇ ଆଣିଥିଲେ । ସେଇଆ କହୁଚୁ । ନୂଆବୋହୂ ଦେଇଥିଲେ କ ?

ଦୁଃଖୀ—ମ, ଗାଆଁରେ ଯାହା ହାତରେ ପଇସା ହେଲା—ସେ ଖାଇଲା । ଦେବେ କଅଣ ମ ?

ଯଦୁ—ପଇସା ?

ଦୁଃଖୀ—ଆଲୋ ! ମୁଁ ନିଆଁ ନାଗୀର ପେଟରେ ପଶି ଲୁଣ ଯିରେଇବ ନାହିଁ । କଅଣ କହୁ କହୁ କଅଣ କହି ପକେଇଲିଣି ! କେତେବେଳୁ ଗାଧୋଇ କରି ଓଦାଲୁଗାଟାରେ ଠିଆ ହେଇଚ । ଯା, ଯା, କଅଣ ଗୁଡ଼ାଏ କହି ପକେଇଲି, ଥଟ୍ଟାରେ । ମୋ କଥା କଅଣ ?

ଯଦୁ—ନାହିଁ, କଅଣ ତୁ କହିଲୁ ? ପଇସା ଥେଲେ ଆମ ଘର ଭାଇ ମିଳିବ ! କହୁନୁ କଅଣ, ଲୁଚେଇଲୁ କାହିଁକି ?

ଦୁଃଖୀ—ନାଇଁମ, ମିଛ କଥା—ତମ ଘରକୁ ଭାଇ ଆସି ନ ଥିଲା ? ଭଲ ଖଜା ପିଠା—ଏଇଆ ।

ଯଦୁ—ଆଚ୍ଛା ହଉ, ମୁଁ ଗଲେ ଘରେ ବୁଝିବି ।

ଦୁଃଖୀ—ଏ ଯଦୁଆ ଭାଇ ! ମୋ ରାଣଟି, ମୋ ମୁଣ୍ଡଖା—ଏ ଗୁଡ଼ାକ ନୂଆବୋହୂଙ୍କୁ ତମର କିଛି କହିବ ନାଇଁଟି । କହିଭୁଣ୍ଡୀ ରମୀକ ତ ସେଇଥିକି ଦୁଆର ମନା ହେଇଚ୍ଛି । କଅଣ ଗୁଡ଼ାଏ ନିଆଁ ଲଗା ମୁହଁରୁ ବାହାରି ପଇଲା । ମୁଁ ତ ସହଜେ ଦୁଃଖୀ ଲୋକ । ଏ ଗାଆଁରେ କେହି ମତେ ଦେଖିପାରନ୍ତି ନାଇଁ । ଆଉ ବାସ ମିଳିବଟି ? ମୋ ରାଣ, ଏଗୁଡ଼ା କିଛି କହିବ ନାଇଁ । ତମର ପୂରନା ଘର କଥା ।

ଯଦୁ—ହୁଁ ···ହଉ । (ପ୍ରସ୍ଥାନ)

ଦୁଃଖୀ—(ଦୀର୍ଘ ନିଃଶ୍ୱାସ ମାରି) ହୁଁ, ହଉ ।

(ଲୁଗା କାଚିଲା)

---

## ( ଗୃହ )

ଦୃଶ୍ୟ—(ଅଳିନ୍ଦ, ମଧୁ ମୁହଁ ଧୋଉଥିଲେ)

ବଡ଼ବୋହୂ—ଆଉ କଅଣ ଦେଇ ନଥାନ୍ତୁ, ଏତେ ବେଗେ ଉଠିପଡ଼ିଲ !

ମଧୁ—ନାଇଁ, ଆଉ କଅଣ ? ପେଟ ପୂରିଲେ ଆଉ ଥାଏ ? ଏକା ଭାଗ୍ୟକୁ, ଖାସା ବୋହୂଟିଏ ପାଇଚେଁ । ରୂପ ଯେମିତି-ଗୁଣ ସେମିତି ! ଶାଗ ଟିକଏ ଖରଡ଼ିଛୁ ଯେ, ଆଃ କି ସ୍ୱାଦ ହେଇଚି କି ପୁଣି ! ଭୁଜଣ, ତରକାରୀ ସବୁତ ତା' ହାତରେ ମିଠା । ଘର କଅଣ ଓଣା ? ଭାଇମାନଙ୍କର ଖୁବ୍ ସ୍ନେହ । ହଁ, ହଁ ପାଶୋର ଯାଉଚି ତ । ଶାଢ଼ୀଟି ବୋହୂ ମନକୁ ପାଇଲାଟି ?

ବଡ଼ବୋହୂ—ପିନ୍ଧି ନାଇଁ ତ ସେ ।

ମଧୁ—ଏଁ, ହାଟଯାକ ବୁଲି ବୁଲି ମୁଁ ବାଛୁକରି କୁମ୍ଭପକା ବସନ୍ତ ଶାଢ଼ୀ ଖଣ୍ଡେ ଆଣିଲି ଆଉ କାହାପେଇଁ ? କଅଣ ସାନବୋହୂର ପସନ୍ଦ ହେଲାନାହିଁ ?

ବଡ଼ବୋହୂ—ପସନ୍ଦ ଅପସନ୍ଦ କେମିତି କହିବ ମୁଁ ? ସେ ପରା ପିନ୍ଧି ନାଇଁ ।

ମଧୁ—ତମେ ଟିକଏ ଶାଢ଼ୀଟାକୁ ଫିଟେଇ ଦେଇ, ମୁହଁରେ ହଳଦୀ ଲଗେଇ, ବୃନ୍ଦାବତୀଙ୍କ ପା'ଛୁଆଇଁ କରି ତାକୁ ଦେଇଥାଆନ୍ତ ସିନା ! ସେ ତ ଥେଲି ଥୋଇଲି ଘର ପିଲି । କଅଣ ରଙ୍ଗ ହେଇଚି ଯେ, ଦେଖିଲାକୁ ଆବୁରି ବସନ୍ତା ?

ବଡ଼ବୋହୂ—ମ, ଯେ଼ୁ ଖାସା କଥା ତ କହୁଛନ୍ତି । ଶାଢ଼ୀ ସାନର ଆଇଚି, ଆଜି ନହେଲେ କାଲି ପିନ୍ଧିବ । ଆଉ କଅଣ ହଉଚି୍ ବୋଇଲେ ରୁଉଚି୍ ? ଇଏ କୋଉ ଗାଆଁ ହାତ-ଉଛୁଳା କଥା ମ ?

ମଧୁ—ତମେ ତ ଏଇଆ କହିବ ! କଓ, କାଲି ପରା ଶନିବାରଟା—ଖରବାରୀ । ଶନି ସୋମବାରେ ଫାଟେ ଫୁଟେ—ଜାଣିଲ ? ଯା,

ଏଇନେ ତାକୁ ମଙ୍ଗୁଳେଇ କରି ପିନ୍ଧିବାକୁ କହିବ—ମୁଁ ହାତରୁ ଆଣି ଦେଇଚ ବୋଲି ।

ବଡ଼ବୋହୂ—ଦେଖ ମ ସ୍ୱାଙ୍କ କଥାକୁ ! ମଲା, ସେ କଅଣ ଆଉ ଜାଣିନାଇଁ, ତୁମେ ଆଣିଚ ବୋଲି ? ଆଉ କିଏ ଦିଅନ୍ତା ମ ତାକୁ ?

ମଧୁ—ନାଇଁ, ସେଇଆ କହୁଚ, ଠିକଏ କଅଁଳେଇ ସଅଁଳେଇ କହିବ । ପିଲା ଝିଅ—ହାଲ ମାଆ ବାପ କୋଳ ଛାଡ଼ି ଆଇଚି । ତା' ମନରେ କେତେ ବାଧକ ପଶିଥିବ । କିଛି ପୁରୁଖା ତ ନୁହେଁ ସେ । ଜାଣିନାଇଁ, ମଣିନାହିଁ ପରା ! ବୁଝିଲ !

ବଡ଼ବୋହୂ—ହଁ, ହଁ, ବୁଝିଲି । ମତେ ଆଉ ଗୁରେ ବୁଝାନାଇଁ । ମତେ ବୋହୂ ପାଳି ଆସେ ନାହିଁ ଯେ ସ୍ୱେ ଆଇଲେ ଗୁରୁକାନ କରିବେ !

(ଦୂରରୁ ଯଦୁ ଡାକିଲା) "ନୂଆବୋହୂ !"

ହେଇଟି, ଯଦୁ ଆଇଲେଣି । ମୁଁ ଯାଉଚ, ତମ ସାଙ୍ଗେ ଆଉ ଭଟରି ଭଟରି ହବାକୁ ବେଳ ନାହିଁ ।

ମଧୁ—ହଁ, ହଁ—ଯା, ଯା । ଶାଢ଼ୀଟା ଦେଉକରି ମଙ୍ଗୁଳେଇ ଦବ । ରାତି ପାହିଲେ ଶନିବାର ଟି । (ପ୍ରସ୍ଥାନ)

ପୁଣି ଯଦୁ—(ନେପଥ୍ୟରୁ) ନୂଆବୋହୂ ! କୁଆଡେ ଗଲକି ? (ପ୍ରସ୍ଥାନ)

ବଡ଼ବୋହୂ—ହଁ, ହଁ, ଯାଉଚ । (ଚାଲିଗଲେ)

---

## ( ପାଞ୍ଚ )

ଦୃଶ୍ୟ—(ଘର ଭିତର)

ସାନବୋହୂ—ଦେଖିଲଣି, ଏ ଶାଢ଼ୀ ଖଣ୍ଡକ ? (ଶାଢ଼ୀ ଦେଖାଇଲା)

ଯଦୁ—କି ଶାଢ଼ୀ ? କୋଉଠୁ ଆଇଲା ?

ସାନବୋହୂ—ଅପା ଆଣି ଦେଇଛନ୍ତି, ବଡ଼ଭାଇ ହାଟରୁ ମୋପାଇଁ ଆଣିଥିଲେ ।

ଯଦୁ—ହଉ, ରଖ ।

ସାନବୋହୂ—ରକ୍ଷ କଅଣ ମ ? ଦେଖ କେମିତିଆ ହେଲଚ ନା, ତମେ ଦେଖିନା ବୋଲ ପରା ମୁଁ ପିନ୍ଧନାଇଁ ।

ଯଦୁ—ହଉ, ପିନ୍ଧା ହବ ତ ।

ସାନବୋହୂ—ଋମୀ ଏଇମିତି ଖଡ଼ଣ୍ଡ ପିନ୍ଧିକରି ଆସୁଥିଲା ଯେ—ତାକୁ ଭଲ ମାନେ ।

ଯଦୁ—ଋମୀ କଅଣ ଆସୁନାଇଁ କି ?

ସାନବୋହୂ—ଏବେ କେତେଦିନ ହବ ସେ ଆଉ ଆସେ ନାଇଁ ।

ଯଦୁ—କାହିଁକି ?

ସାନବୋହୂ—କେଜାଣି, ଅପା ତାକୁ କଅଣ ଝିଙ୍ଗାସି କରି କହିଲେ ଯେ, ସେଇଦିନଠୁଁ ଆଉ ସେ······

ଯଦୁ—କଅଣ କହିଲେ ?

ସାନବୋହୂ—ଭାଇ ଆସିନଥିଲେ ସେଦିନ, ଆମ ଘର ଦ୍ୱାର ଥୋର କଥାରେ କଅଣ ସବୁ କହିଲେ ଅପା ଋମୀକି । ଏତେ କଥା ମୁଁ କାନାଏଁ ନାଇଁ । ଋମୀ କାନ୍ଦୁଣୀମାନ୍ଦୁଣୀ ହୋଇ କରି ଗଲା—ଆଉ ତ ଆସିନାହିଁ ।

(ବଡ଼ବୋହୂ ଆସିଲେ)

ବଡ଼ବୋହୂ—ମତେ ଡାକିଲ ଯଦୁ ?

ଯଦୁ—ହଁ, କାହିଁକି ଭାରି ଭୋକ ହଉଚି ଯେ—

ବଡ଼ବୋହୂ—ହବନାଇଁ ? କି କଥା ଯେ ? ଲୋକଙ୍କ ଘରେ ଏତେବେଳକୁ ତମପରି ଭେଣ୍ଡିଆ ପୁଅବଖତ ଖାଇସାରନ୍ତେଣି । କଅଣରୁ ଖରା ଖାଇଖାଇ ଆଇଲ—ଭୋକ ଲାଗନ୍ତା ନାଇଁକି ଆଉ ? କୁହା-ହଉଚି କଣନା—କାହିଁକି ଭୋକଟା ହଉଚି । ଆସ, ଆସ ! ଗୋଡ଼ ହାତ ଧୋଇଲଣି ?


Digitised by srujanika@gmail.com

ଯଦୁ—ହିଁ, ନଈରୁ ଗୋଟା ପାଣି କର ଆସିଚ । କଅଣ ଅଚ୍ଛି, ଖାଇବାକୁ ?

ବଡ଼ବୋହୂ—ସବୁ ଅଚ୍ଛି । ପଖାଳ ଥୋଲ । ଭଜା କରିଚି, ବଡ଼ି ଅଚ୍ଛି । ବୋହୂ ସକାଳେ ସନ୍ତୁଳା କରିଥିଲ ଅଚ୍ଛି, ଆସ ବେଗେ ।

ଯଦୁ—ଜଳଖିଆ ଚେହେରା କଚ୍ଛି ନାଇଁ ?

ବଡ଼ବୋହୂ—ନାଇଁଯେ କହିଲେ କଅଣ ହବ ନାଇଁ ? ପିଠା କରିବାକୁ ବିରି ଗୁଣ୍ଡ ବତୁରେଇ ଥିଲି । ଟିକିଏ ବସ, ମୁଁ ଖାଲି ଦ'ଭେଗ ବାଟିଦେଇ ଆଣୁଚ ।

ଯଦୁ—ଘରଫାରରୁ କଚ୍ଛି ଆଉ ନାହିଁ ?

ବଡ଼ବୋହୂ—(ହସି) ଆଃ, ଆଉ ଆଜିକ ? ଗୁଞ୍ଜିଲାଠୁ ତ ଖାଇଲ ନାଇଁ । ବାସି ହୁଅନ୍ତା ସିନା ! ବୋହୂ ଘର ଖଜାପିଠା ସୁଆଦ ବୋଲି ସାଇଟା ଅନେଇଁ ରହିଥା'ନ୍ତି । କାଉ ଶାଗୁଣା ପରି ଆସି ଦୁଆରେ ବେଢ଼ି ଯାଇ ନିକାଶ କରିଦେଲେ । ଆଉ ଥାଏ ? ଆଲୋ ହଁ, ଭଲ ମନେପଡ଼ିଲା । କେତେ ଗାଳି ଖାଇ ସାରିଲଣି । ଦବୁଟି ସେ ଶାଢ଼ୀଟାକୁ । ପିନ୍ଧି ନଉଁ ଟି ?

ସାନ—ନାଁ ।

ବଡ଼ବୋହୂ—ହଉ, ଦେ, ଦେ । ଯଦୁ ଟିକିଏ ବସ, ମୁଁ ଗୋଡ଼େ ଗୋଡ଼େ ପିଠା ଦିଖଣ୍ଡ କରି ଦଉଚ ।

ଯଦୁ—ନାଇଁ, ନାଇଁ ଥାଉ । ମୁଁ ଦାଣ୍ଡରୁ ଆସେଁ । ଏକାଥରେ ରାତିକି ଖାଇବ ।

ବଡ଼ବୋହୂ—ମ, ଘେକିଲି ପେଟରେ ଦାଣ୍ଡବୁଲା ମନେ ପଡ଼ିଗଲା କାହିଁକି ? ତମର ଏ ଯୋଉ ଅଟିଆ କଥା । ପିଲା ହେଇଥିଲ ଯାହା—ଆଜି ଏଡ଼ୁଟିଏ ହେଇ ସେଇଆ । ବସ, ବସ—ତମକୁ ମୋ ରାଣଟି ।

ଯଦୁ—ନାଇଁ, ମୁଁ ଆସେଁ । ହେଇଟି ଶାଢ଼ୀଟା ନିଅ, ରଖ ।       (ପ୍ରସ୍ଥାନ)

ବଡ଼ବୋହୂ—ନା, ରଖିବ କଅଣ ମ ? କଅଣ ରଖିବାକୁ ମାଗିଲ ? ଏ ଯଦୁ, ଯଦୁ ! ନ ଖାଇ କର ଯା ନାଇଁ ମ । ମୁଁ ସାଙ୍ଗେ ସାଙ୍ଗେ—

ଯଦୁ—(ଦୂରରୁ) ମୁଁ ଦାଣ୍ଡରୁ ଆସେଁ—(ଚ୍ଳକ ଗଲେ)

---

## ( ଛଅ )

(ବାହାର ପିଣ୍ଡା)

ସାଆନ୍ତରା—ଏ, ଏ, ଆଲେ ଏ ଚଣ୍ଡୀ ! କୁଆଡ଼େ ଏ ମୂଳ ମଞ୍ଜରେ ପଲସିଛୁ କଲେ ! ଏଇବାଟେ ଯାଉଚୁ, ଟିକିଏ ଲୁଣ୍ଡ ପଚରା ବ ନାଇଁ ?

ଦୁଃଖୀ—ମଲ୍, ସାଆନ୍ତରା ଅଜା ! ବୁଢ଼ାଟିଏ ହେଲଣି; ଆମ୍ଭର ଅକଲ ଦେଖ !

ସାଆନ୍ତରା—ହଇଲେ ଏ ଦୁଃଖୀନାନୀ ! ଆଲେ ବୁଢ଼ା କହୁଚୁ ମତେ ? ତୋ ଆଖିକି ମୁଁ ବୁଢ଼ାପରି ଦିଶୁଚି ? ଆଇଲୁ ଆଇଲୁ, ପାଖକୁ ଆଇଲୁ !

ଦୁଃଖୀ—ଆଉ ଚଣ୍ଡୀ କଅଣ ?

ସାଆନ୍ତରା—ନୁହଁ ? ତୁ ତ ଗୋଟାଏ ମଶାଣୀ ଚଣ୍ଡୀଟିଲୋ ! ଯାହାଠେଇଁ ଲଗିବୁ, ତା ଜାତି ମହତ ନ ସାରବା ଯାଏ, ତୋ ଆଖିକି ନିଦ ନାଇଁ । ଆଚ୍ଛା, କୁଆଡ଼େ ଥିଲୁ କି ? କେତେଦିନ ହବ ତତେ ଦେଖି ନାହିଁ । କଅଣ ଗାଆଁରେ ନ ଥିଲୁ କି ?

ଦୁଃଖୀ—ମଲ୍, ଆଉ କୋଉ ଗାଡରେ ମୋର ମରଣ ହୁଅନ୍ତା ମ ! କିଏ ଅଛି ମୋର, କୋଉଠିକି ଯାଆନ୍ତି ?

ସାଆନ୍ତାଣୀ—ଆଲୋ, ପିଲା ହୋଇଥିଲୁ ଯାହା—ଆଜି ସେଇଆ ତୋର ? ଆସି କୋଡ଼ିଏ ବାଇଶି ହେଲା, କେଉଁଠି ଘର ଗିରସ୍ତି କରିବୁ ନାଁ, ଏମିତି ଉଦଣ୍ଡୀ ହୋଇ ବୁଲୁଥିବୁ ସଦାଦିନେ ?

ଦୁଃଖୀ—ଘର ଗିରସ୍ତି କଅଣ ମ ?

ସାଆନ୍ତାଣୀ—ଯା, ଯା, ଫେର୍ ଏ ତୁଣ୍ଡକୁ କଅଣ ଆସୁଥିଲା ଯେ ଏଇନେ ! ଘର ଗିରସ୍ତି କଅଣ ଜାଣିନଉଁ ? ସାଇରେ ଆଉ ପାଞ୍ଚଟାଙ୍କୁ ଦେଖୁ ନାଉଁ ? ଲୋକେ ସଂସାର କରୁଚନ୍ତି, ନାଁ ତୋରି ପରି ସବୁ...

ଦୁଃଖୀ—ମଲା, ମୁଁ କଅଣ କଲି କି ?

ସାଆନ୍ତାଣୀ—ଅଘଣି ହୋଇ ବୁଲୁଚୁ । ସବୁଦିନେ କଅଣ ଏକା ଥିବ କଲେ ! ହାତ ଗୋଡ଼ ଗୃହ ରଥ ଚଳୁଚି—ଉଗୁର ହଉଚୁ ଏଇନେ । କାଲି ମୋରି ପରି ହେଲେ—ସେଇଠୁ ?

ଦୁଃଖୀ—ହଁ, ଅଛି ତ ସେକାଳ ।

ସାଆନ୍ତାଣୀ—ଆଲୋ, ମୁଁ ସବୁ ଜାଣେ । ଅଛି ତ ବୋଲି 'ଭୂ ଯୋଉ କଥା କହୁଚୁ, ମୁଁ ବୁଝୁଚି ସବୁ । ହେଲେ, କେହି ତୋ ତୁଣ୍ଡକୁ ଡରି ଭରସି କିଛି କହନ୍ତି ନାହିଁ ବୋଲି, ମୁଁ ତ ଗୋଟେ ବୁଢ଼ା ହାଡ଼ା ହୋଇ ମୂରବଟେ ଅଛି । ମୁଁ କଅଣ କିଛି ବୁଝୁନାହିଁ, ଜାଣୁ ନାହିଁ ?

ଦୁଃଖୀ—କଅଣ ଜାଣିଚ ତମେ ?                    (ହସିଲା)

ସାଆନ୍ତାଣୀ—ଆଲୋ ହସୁଚୁ କଅଣ ? ଆମ୍ଭ ଯୋଉଠି ଦେଇଥିଲୁ ସେ ସବୁ ଚୁନିକୁ ହାତ ବଢ଼ାଇବା କଥା ତୋର । କୋଉ କାଳେ ତୋ ମାଆ ଥିଲା, କୋଉଦିନ କୋଉ କଥା ହୋଇଥିଲା, ଆଜି ତ ସେ ବଡ଼ଲୋକ, ସେ ତ ଫେର ତା ସରସା ଦେଖି ଘର ସଂସାର କଲା, ଆଉ ତୁ ଚଣ୍ଡୀ ଏମିତି ପିଡ଼ାଶୁଣୀ ପରି ବୁଲୁଥିବୁ କାହିଁକି ?

ଦୁଃଖୀ—ସାଆନ୍ତାଣୀ ଅଜା ! ଆତମା କଅଣ ମଣିଷର ଦିଇଟା ? ସେ ତା ପଥ ହୁଡ଼ିଲା—ହୁଡ଼ୁ, ଦଇବ ଅଛି । ସଂସାର ନ କରି କଅଣ ଲୋକେ ଆଉ ନାହାନ୍ତି ?

ସାଆନ୍ତର—ଏଗୁଡ଼ା ଅଭିମାନଆ କଥା—ମଧୁ ମହାପାତ୍ର ତ ସବୁ ଜାଣିଶୁଣି ତୁ ନଧମା ଘର ବୋଲି, ଘିଅ କରେଇରେ ହାତ ବୁଡ଼େଇଲେ। ଆଉ କଅଣ ତୋ ବଅସ ମାଡ଼ ଆସୁଚି ? ତୁ କୋଉ ଅସୁନ୍ଦର ହେଇଚୁ ? ନାଁ—ଖଣ୍ଡିଆ ଖାବରା ହେଇଚୁ ? ବୋଲି ମାନ— ମୁଁ ସବୁଠି ସବୁ କରି ଧରି ଦେବି। ଆସନ୍ତା ମଗୁଣୀରଙ୍କୁ···

ଦୁଃଖୀ—ହଁ, ହଁ, ମୁଁ ଚୁଲିକି ଯିବି, ନଈରେ ଚକାପଥର ଅଛି, ନଈ ଅଛି।

ସାଆନ୍ତର—ହାଉ, ତୁଟା ନପଟ ବାଯୂଣୀଟେ ସତେ ! ଦେଖ୍ ଆଜି ମୋ କଥା ମାନୁନଉଁ-ଫେର୍·········

ଦୁଃଖୀ—ଆଉ ଫେର୍ ନାଁ ଫୁର୍। "ହାଣ୍ଡି ଭାଙ୍ଗିଲେ ଖପରା—ମନ ଭାଙ୍ଗିଲେ ପର।" ହେଲଇଟି, ହେଇଟି, କିଏ ଆଇଲାଣି ଦେଖ। ମୁଁ ଯାଉଚି।

ସାଆନ୍ତର—କିଏ କଲେ ?

ଦୁଃଖୀ—କେଜାଣି—

ସାଆନ୍ତର—ଆଲେ, ତୋରି ଯଦୁଆ ତ।

ଦୁଃଖୀ—ମଲା, ମୋର କଅଣ ମ ? ଏ ସାଆନ୍ତର ଅଜାଡ଼ା ଏଡ଼ିକି ନଲଠା ?

ସାଆନ୍ତର—ହଉ, ହଉ ଯା। ଟିକିଏ କେତେବେଳେ ଆସିବୁ ଲେ ! କଥା ସରିଲା ନାହିଁ।

ଦୁଃଖୀ—ହଉ,ହଉ,ଆସିବି, ଆସିବି। (କଥା କହି କହି ଦୂରରୁ ଦୂରକୁ ଗଲା)

(ଯଦୁ ପ୍ରବେଶ)

ଯଦୁ—ସାଆନ୍ତର ମଉସା, ବସିଚ କି ?

ସାଆନ୍ତ୍ରାଣୀ—ହଁ ରେ ପୁଅ, କୁଆଡ଼େ ତ ଆଉ ବେଶୀ ଯା'ଆସ ନାହିଁ। ଏ ପରୁଡ଼ି ମଶିଣା ଖଣ୍ଡିକ କେଉଁଦିନ ହବ ଲଗେଇଲାଣି ଯେ, ଘଡ଼ିଏ ଘଡ଼ିଏ ବସି ବସି ବୁଣୁଚ। କୁଆଡେ ଆସିଲୁ ଯଦୁ ?

ଯଦୁ—ତମ ସାଙ୍ଗେ ଟିକିଏ ଗୋଟେ କଥାରେ ଭଲବାକୁ ଥିଲି।

ସାଆନ୍ତ୍ରାଣୀ—ହଉ, କି କଥା କହ। ବସ୍ ଏଇଠି।

ଯଦୁ—ନାହିଁ, ସେ ଘରକଥା—ଘର ଭିତରେ ପଡ଼ିବ।

ସାଆନ୍ତ୍ରାଣୀ—ତୋ ମୁହଁ କାହିଁକି ଶୁଖିଲା ଦିଶୁଚି ରେ! କଅଣ, ହେଇଚି କ'ଣ ?

ଯଦୁ—( କାନ୍ଦି ପକେଇଲା )

ସାଆନ୍ତ୍ରାଣୀ—ଆରେ ଆରେ, ଛି। ଏ କ'ଣ କରୁଚୁ ତୁ ? କେବେ କାଳେ ନାହିଁ। ଆଜ ତୋ ଆଖିରେ ଲୁହ ! କଅଣ ଏମିତି ହେଲା କି'ରେ ?

ଯଦୁ—ତୁମେ ଘର ଭିତରକୁ ଆସ।

ସାଆନ୍ତ୍ରାଣୀ—ହଉ, ଚାଲ ବାପା !

( ଦୁହେଁ ଭିତରକୁ ଚାଲିଗଲେ )

---

## ( ସାତ )

ଦୃଶ୍ୟ—(ମଧୁଙ୍କ ଘରଭିତର)

ବଡ଼ବୋହୂ—ନୋଟା ପହଣ୍ଡରେ ଅଛି, ମୁହଁ ଧୋଇ ଆସ ଯା।

ମଧୁ—ହଉ ( କୁଳି କରିବା ଶବ୍ଦ ) ଯଦୁ ଖାଇଲାଣି ?

ବଡ଼ବୋହୂ—ନାହିଁ, ଖାଇବାକୁ ମାଗିଲେ—ଜଳଖିଆ କିଛି ନଥିଲା। ବୋହୂ ବାପଘର ପିଠା ଚାଲିସିଲେ ଯେ,—ତେଇଁକି ତ ଗାଆଁ ଗୋଟାକର ଆଶା—ସବୁ ବଣ୍ଟାକୁଣ୍ଟାରେ ସରିଚି। ବଡ଼ ଚାଉଳ ଭଙ୍ଗେଇଥିଲି, ପିଠା ଦି'ଖଣ୍ଡି କରି ଦଉଚି ବୋଲି କହୁ କହୁ ରୁଷି-କରି ପଳେଇଲେ।

ମଧୁ—( ହସି ) ଏତୁଟିଏ ହେଲ୍‌ଣି—ତା'ର ସେଇ ରୁଷା ଆଉ ଗଲ୍‌ନାହିଁ କ ତମ ଦାଅର ଭାଉଜ କଲ ଆଉ ତୁଟିଲ୍ ନାହିଁ ।

ବଡ଼ବୋହୂ—କଲ କଅଣ ମ ?

ମଧୁ—ସେଇ—ସେଇ ତମ ମଧୁର କଲ ହେ—ଏଇ ରୁଷାରୁଷି ।

ବଡ଼ବୋହୂ—ନାଇଁ, ଆଜ ତାଙ୍କର ଏ ରୁଷା ଭିତରେ ସ୍ୱଗଥିଲ ପରି ଲଗିଲ୍ । ବୋହୂ ପେଇଁ ଯୋଡ଼ ଶାଢ଼ୀ ଆଣି ନ ଥିଲ, ତାକୁଇ କ'ଣ ଦେଖୁଥିଲେ । ଶାଢ଼ୀଟା ମୋ ହାତକୁ ଦେଇ ଫଣଫଣ ହେଇ ବାହାରିଗଲେ । ଯେତେ ପଛରେ ଗୋଡ଼େଇ ଡ଼ାକଲ, ସେ କଅଣ ଆଉ ଅଛନ୍ତ ?

ମଧୁ—ଶାଢ଼ୀ କଅଣ ମନକୁ ପାଇଲ୍ ନାହିଁ ?

ବଡ଼ବୋହୂ—କେଜାଣି ।

ମଧୁ—କୁଆଡ଼େ ଗଲ୍ ସେ—ଥାଉ, ଥାଳ ନେଇ ଯା—ମୁଁ ତାକୁ ଧରି ଆଣେ । ଏଇ ଦାଣ୍ଡରେ କ ଭଗବତ ଘରଠି ତ ଥିବ ।

( ସାଆନ୍ତର ପାଟି ଶୁଭିଲ୍ )

ସାଆନ୍ତ୍ରା—ବଡ଼ପୁଅ ଅଛ କ ?

ମଧୁ—କଏ, ସାଆନ୍ତ୍ରା ମଉସା ? ଆସ, ଆସ ।

ସାଆନ୍ତ୍ରା—(ଆସିଲେ) କଅଣ ଖାଇ ବସିଥିଲ ବାପ ! ହଉ, ହଉ, ଖାଇସାର ଆଉ କଏ ବୋହୂ କ ?

ମଧୁ—ହଁ, ମୋତେ ବାଢ଼ି ଦେଲେ ଯେ, ମୁହଁ ଧୋଇ ଆସୁଥିଲ ତ—

ସାଆନ୍ତ୍ରା—ହଉ, ହଉ, ମୁଁ ଏଇଠି ଅଛି—ପହଣ୍ଡରେ ବସୁଚ ।

ମଧୁ—ନାଇଁ, ସେ ଯଦୁଟା କୁଆଡ଼େ ରୁଷିକରି ଦାଣ୍ଡଆଡ଼େ ଗଲ୍ ଯେ—ତାକୁ ଡ଼ାକ ଆଣେଁ—ଖାଇବ । ତାର ତ ସେଇ ପିଲଳିଆ ଆଳ ଗଲ୍‌ନାଇଁ ମଉସା ! ତାଙ୍କ ଦାଅର ଭାଉଜଙ୍କର ଦାନକୁ ଏମିତି ଅଠରଥର ରୁଷା ରୁଷି ହଉଥିବ । ମୁଁ ଏବେ ଭଲଲୋକ ହେଇ କେତେ ଭଙ୍ଗୁଥିବ ? କୁଆଡ଼େ ଗଲ୍—ଦେଖିବାକୁ ବାହାରିଥିଲ ।


Digitised by srujanika@gmail.com

ସାଆନ୍ତରା—କଏ, ଯଦୁ ? ଆମର ପିଣ୍ଡାରେ ତ ବସିଥିଲା । ଗୋଟେ କଥା କହିବାକୁ ଆସିଲା ଯେ, ମନ କେତେକେ ହଉଚି—କେତେକେ ବଳୁନାହିଁ । ସେଇ ଯଦୁ କଥା ।

ମଧୁ—କଅଣ ?

ସାଆନ୍ତରା—ତମେ ଯାହାକୁ ଋଷା ବୋଲି କହୁଚ, ସେ ଋଷା ନୁହେଁ-ରିସା, ରାଗ । ତାର ମୁଣ୍ଡ ଖରାପ ହେଇ ଯାଇଚି ବାପା ! ନଇଲେ ତମେ—ରାମଚନ୍ଦ୍ର ପରି ଭାଇ—ସେ ଫେର୍ କହନ୍ତା ଭାଇଙ୍କି କହ—ମୁଁ ଅଲଗା ହାଣ୍ଡି କରିବ ।

ମଧୁ—କଅଣ ହେଲା—ଅଲଗା ହାଣ୍ଡି କରିବ ଯଦୁ ? ପାଞ୍ଚ ବରଷର ହେଇଥିଲା, ବାପା ଗଲେ—ତମେ ତ ସବୁ ଦେଖିଛ ମଉସା । ସେଇ ଯଦୁ କରିବ ହାଣ୍ଡି ଅଲଗା ! ମୁଁ ଜାଣିଚି—ମରିନାହିଁ ମଉସା । ଯଦୁ ପୂରନ୍ତା ଘରେ ବାଡ଼ ପକେଇବ ? ଏ କଥା କିଏ କହିଲା ?

ସାଆନ୍ତରା—ଆଉ କାହାଁକି ସେ କଥା ପଚାରୁଚ ବାପା ? କାନ୍ଦ, ରଡ଼-ଗଡ଼, ମୋତେ ରାଣ ନଅମ ପକେଇ, ଜିଦ୍ ଧରି ବସିଛି । ଅଲଗା ହାଣ୍ଡି ହେଲେ ଯାଇଁ ସେ ଭାତ ଛୁଇଁବ—ନଇଲେ ଉପାସରେ ପ୍ରାଣ ଯାଉ, ହେଲେ ଏ ଘରେ ତାର ବାସ ନାହିଁ ।

ମଧୁ—ହଉ, ଚାଲ ତମ ଘରଟିକି, ମୁଁ ଥରେ ତାକୁ ପଚାରେଁ ।

ସାଆନ୍ତରା—ପଚାରିବ କଅଣ ବାପା ! ଯେଝା କର୍ମ ସିଏ ଭୋଗିବେ । ମୁଁ ବହୁତ ବୁଝେଇଲି, ତା'ର ତ ସେଇ ଏକା ରେଣ୍ଟି । ଭିନ୍ନେ ହେବ——ତେବେ ଯାଇ ଭାତ ଖାଇବ ।

ମଧୁ—ହଉ, ହେଲା । ମୁଁ ତ ବଡ଼ଭାଇ । ଢ଼'ବଧା ସେ ମାଇଲେ ମୁଁ ସହିବ । ମୋତେ ଲାଜ କଅଣ ? ଥରେ ପଚାରି ଦିଏଁ ।

ସାଆନ୍ତରା—ତୁମେ ନିଜେ ଯିବ ?

ମଧୁ—ଯିବ ନାହିଁ ? ରାଗରେ ସେ ଏବେ ଦ'ପଦ କହିବ—କହୁ, ମୋ ଭାଗ୍ୟତ ଏକଥା ଶୁଣେଇ ସାରିଲାଣି ! ଆହୁରି କଅଣ ଅଛି ଦେଖେଁ ।
( କାନ୍ଦ କାନ୍ଦ ହୋଇଗଲେ )

ସାଆନ୍ତାଣୀ—ଆହା ! ହା ! ତୁମେ ପିଲାପରି କାନ୍ଦୁଚ କଅଣ ପୁଅ ? ଯେତେ ଭାଇ ସେତେ ଘର । ତାଙ୍କ କର୍ମ ସେ ଭୋଗିବେ । କିଏ. ଏବେ କଅଣ କରିବ ?

ମଧୁ—ହଉ, ଚାଲ । ମୁଁ ଦ'ପଦ କଥା ହୁଏଁ, ତା ସାଙ୍ଗେ—(ଭିତରକୁ ଚାହିଁ) କୁଆଡ଼େ ଗଲ କି ? ଶୁଣିଲ ତ ସବୁ ? ଏ ଥାଳ ଉଠେଇ ନିଅ । ଫେର୍ ଯୋଗଥିଲେ ଖାଇବା । ଚାଲ ମଉସା ।
( ଦୁହେଁ ପ୍ରସ୍ଥାନ )

———

## ( ଆଠ )

ଦୃଶ୍ୟ—( ତୋଟାଭିତର )

ଦୁଃଖୀ—ତମେ ଏବେ ଏଇଥିକି ଚଷିକରି ବଇଚ ଯଦୁଆ ଭାଇ ? ଯେତେହେଲେ ତ ସେ ବଡ଼ଭାଇ, ଆଉ ଭାଉଜ ।

ଯଦୁ—ମୁଁ କଅଣ ମନା କରୁଛି କିଲୋ ଦୁଃଖୀ ! ସେ ସବୁ କରିଛନ୍ତି, ମନେ ମଣିଷ କରିଛନ୍ତି—ସତ କଥା । ବାକି ଦିହ ଥିଲେ ତ ।

ଦୁଃଖୀ—ହଁ, ଯଦୁଭାଇ, ତା ବୋଲିବାକୁ ରକତ ମାଉଁସ ଶୋଷିରେ—ସହ ହେବାଇଲେ କେତେ ସହିବ ? ମୁଁ କଅଣ ସବୁ ଜାଣୁ ନାହିଁ ? ତୁମେ ସିନା ପଛ କଥା ପୋଛିଦେଲ ସବୁ ମନରୁ । ମୋ ନିପୁତ ଜଗି, ମୁଁ ତ ପୁଣି ସବୁବେଳେ ଯା'ଆସ କରୁଚ । ଆଖି ଅଛି—। ଦେଖୁଚ, କାନ ଅଛି ଶୁଣୁଚ । ବଡ଼ଘର—ବଡ଼କଥା । ତୁଣ୍ଡ ନ ଫିଟିଲେ ଗଲା ।


Digitised by srujanika@gmail.com

ଯଦୁ—ତୁ ପଛକଥା ବୋଲି କହୁଚୁ ଯେ, ଦୋଷ କଅଣ ମୋର ? ସେଇ ଝିଅଜ ତ ସବୁ ଭିଆଣ କଲେ, ସେଇ ପୁଣି ଏବେ—

ଦୁଃଖୀ—ନୂଆବୋହୂଟା ଆଇଚ ଯେ, ଗିରସ୍ତ ସୁଖ ବୋଲି କଅଣ ସେ ଭଲ୍ ଢଙ୍ଗେ ଜାଣନ୍ତା ? ଉପରକୁ ସିନା ଧୋବ ଧାଉଳିଆ— ଭିତରେ କଂସାଗ୍ନି-କରତ ! ଟିକଏ ଯେବେ ନୂଆବୋହୂ ପାଖେ ବସିଲି, ଡ଼ାକ ପଡ଼ବ—"ଦୁଃଖୀ ଲୋ, ଦୁଃଖୀ ଲୋ,"—ସେମିତି ସେ ରମୀଠାକୁ କଅଣ କହିଲେ ବୋଇଲେ ଯେ—ଗୁଣ୍ଡ଼ା ! ଯା, ଯା' ତେମେ ଘରକୁ ଯା; ଏଇ ରାତି ଅନ୍ଧାରେ ତେହିଁକି କୋଉ ଦୁଃଖକୁ ତୋଠାଠା ଭିତରେ ଏକୁଟିଆ ବସିଚ, କହିବ ?

ଯଦୁ—ଘର ? ଘରମୁହାଁ ଆଉ ଚୁହିଁବାକୁ ମନ ହଉ ନାହିଁ । ସେ ତାଙ୍କର ସବୁ ବକ କଣି ଗଣ୍ଠି ମୁଠି କରିବାରେ ଲାଗିଛନ୍ତି । କାଲିକ କାଲି ତ ଫେର୍......

ଦୁଃଖୀ—ସତ ସେ କଥା—ସାପ ବଡ଼ିଲେ, ଫେଡ଼ା ବଢ଼େ । ହେଲେ, କଅଣ କରିବ ତେମେ ? ମିଛରେ ସିନା ଖଲବ ବାହାରିବ !

ଯଦୁ—ହଉ । ଯାଏଁ, ଘରକୁ ନୁହେଁ—ସାଆନ୍ତର ବୁଢ଼ା କଅଣ ବୁଝି ଆଇଲେ ପଗ୍ଗରେଁ ।

ଦୁଃଖୀ—ଖାଇନାଁ କଣ୍ଟୁ, ମୋ ଘରବାଟେ ଗ୍ଲଲ । କହିବାକୁ ତ ସାହସ ପାଉନାହିଁ—ଗରିବ ଘର, ଯିବ ?

ଯଦୁ—ଯିବି ହଁ, ବାକ ଖାଇବି ନାହିଁ ।

ଦୁଃଖୀ—ମୋ ରାଣଟି । ଏଇ ତୋଠା, ଏଇ ଆମ୍ବଗଛ—ସବୁ କଅଣ ପାଶୋରି ଦେଲ ? ମୋ ମୁଣ୍ଡ ଖାଆ—ଆସ । ବସିକରି ପଛେ ଉଠିଯିବ । ଯାହା ଅଛୁ ଗଣ୍ଡେ ତୁଣ୍ଡରେ ଦବ । ଉଠ, ଏତେ ଟିକିଏ ଯେବେ ମୋ ଉପରେ ଶରଧା ଥିବ···

ଯଦୁ—ପେଟରୁ ତ କଅଣଟେ ଉଠୁଚି ଲୋ ଦୁଃଖୀ । କଣ୍ଟୁ ତଣ୍ଟିରେ ଯିବ ନାଇଁ, ମନ ତ ପୋଡି ଯାଉଚି, ଖାଇବ କଅଣ ?

ଦୁଃଖୀ—ମଲା, ନହେଲା ବେଳକୁ ଏବେ 'ଯେତେ ଭାଇ ସେତେ ଘର' । ତମେ କଅଣ ନଭଗୁଡ଼ିଆ ହେଉଛ ? ଏଇଥିକି ଚିନ୍ତା କରି, ନଖାଇ, ନପିଇ, ଆପଣା ଦେହ ସାରିବ ? ଉଠ, ଉଠ, ମୋ ରାଣଟି, ସାତଥର ।

ଯଦୁ—ହଉ, କହୁଚୁ ଗ୍ଲଲ, ବାକି ପେଟକୁ ଗଲେ ସିନା ।

(ଦୁହେଁ ଗ୍ଲଲଗଲେ)

---

## ( ନଅ )

(ରଘୁ ପଧାନଙ୍କ ଘର ଅଗଣା)

ମଧୁ—ଯା, ଦୁଆଁଙ୍କୁ ମୁଣ୍ଡି ଆମାର ବାହାରି ଆସ । ଘର ସବୁ କୋଲପ ପକେଇ ସାନବୋହୂ ଜିମା ଦେଇ ଦିଅ ।

ବଡ଼ବୋହୂ—କୋଉଠିକି ଯିବା ?

ମଧୁ—ମ, ଏଡ଼େବଡ଼ ବ୍ରହ୍ମାଣ୍ଡ ପଡ଼ିଚି, ଆମେ ମାମୁଁ ମାଈଁ ଦି'ପ୍ରାଣୀ—କଅଣ ନେହେ, ନାଁ ନେଣ୍ଟେବା ? ହାତ ଗୋଡ଼ ଅଚ୍ଛି ମୋର, ପୋଷି ପାରିବ ନାହିଁ ଦିଇଟା ପେଟ ?

ବଡ଼ବୋହୂ—ଯଦୁକୁ ପଦେ ବୁଝାଇ ଶୁଝାଇ କହିଥିଲେ, ହେଇନଥାନ୍ତା ?

ମଧୁ—ସାଆନ୍ତରା ବୁଢ଼ା ପରା କହିଲେ—ସେ ଜୀବନ ହାରିବ ପଛେ, ଆମ ମୁହଁ ଗ୍ଲହିଁବ ନାହିଁ । ଏତେବଡ଼ କଥା କାହିଁକି ? ଆମେ ତ କୋଳ କାଖ କରି ତାକୁ ଏଡ଼େରୁ ଏଡ଼େ କରିଚେଁ । ମନେ ପଡୁଚି ଆଜି, ଗ୍ଲରି ବରଷର ହେଇଥାଏ—ବାପ ଗଲେ—ଛଅ ବରଷରେ ମାଆ ଗଲେ—ମୁଁ ସେଇ ମଧୁ ପଧାନ ମତେ ବାର-ବରଷ । ଯଦୁ ଜାଣେ ନାଇଁ, ବାପ ମାଆ କେମିତିକା—ସେଇ ଯଦୁ ପୁଣି ଅ.ଜି—(କଥା ବେକି ହୋଇଗଲା କୋହରୁଠି)

ବଡ଼ବୋହୂ—ଥାଉ, ତେମେ ଲୁହ ପକାନାଇଁ—ଯଦୁ ଭଲରେ ଥାଉ । ଏଇଆ, ଆମର ସେ କ ଦୋଷ ଦେଖିଲ୍—ଏତିକ ତାକୁ ପଚ୍ଛର ଥାଆନ୍ତୁ ।

ମଧୁ—ନାଁ, ସେ କଥା ସବୁ ଛାଡ଼ । ମୋ ଦୁଆରେ ଭଲଲୋକ ବସି କାନ୍ଥ ଅଲଗା କରିବେ—ଦୁଆର ବନ୍ଧ, ଡ଼ିଙ୍କି ଫାଡ଼ିବେ ? ଚୂଲିହିଙ୍କା ଦଫାଲ କରିବେ, ମୁଁ ଖାଇ ଥାଉଁ ଥାଉଁ ? ସେକଥା ହବ ନାଇଁ । ତେମେ ଯା, ବୋହୂକୁ ଚୁଵ ପଦ ଦେଇ, ଦହେ ଦହେ ବାହାରି ପଡ଼ । ରାତି ନ ପାହୁଣୁ ଯେମିତି ଗାଆଁ ଗଣ୍ଡାର କେହି ଜାଣିବେ ନାହିଁ କ ଶୁଣିବେ ନାହିଁ । ଆମେ ଚ୍ଳିଯିବା । ପର ଗାଆଁରେ କଏ କାହାକୁ ଚିହ୍ନୁଚି ? ସହରକୁ ଗଲେ କେତେ ପାଇଟି ମିଳିବ । ଚ୍ଲ, ମୁଁ ବାହାର ଖଞ୍ଜାରେ କାଗଜପତ୍ର ଗୁଡ଼ା ସଜାଡ଼ି ଦଉଚି । ତମେ ବୋହୂକୁ କଅଁ ମୁଠା ଦେଇ, କହିପୋଛି, ବୃନ୍ଦାବତୀଙ୍କ ମୁଣ୍ଡିଆ ମାରି ବାହାରିପଡ଼ ।

ବଡ଼ବୋହୂ—ବୋହୂ ତ ଖାଲି କାନ୍ଦ, ରଡ଼ି ଗଡ଼ୁଚ୍ଛି । ତାକୁ କଅଣ ବୋଲି ବୁଝେଇବ ଯେ !

ମଧୁ—କହୁନାଇଁ, ତା'ର କ ଦୋଷ ? ପିଲାଟା ସେ । ଯଦୁ ଯେବେ ମୋର ନହେଲା, ସେ କ'ଣ କରିବ ?

ବଡ଼ବୋହୂ—ସେ ତ ଭେ ଭେ ଡକା ପକଉଚି । କେମେତେ ଛାଡ଼ି ସହିବ ଭଲା, କହିଲ ?

ମଧୁ—(ଦୀର୍ଘ ନିଃଶ୍ୱାସ ମାରି) ଉପାୟ ତ ଆଉ ନାହିଁ । ଛାଡ଼, ତମେ ଯା —ବେଗେ ବାହାରି ପଡ଼ ।

---

## ( ଦଶ )

(ଘର କବାଟରେ ଧକ୍କା ମାରିବା ଶବ୍ଦ)

ରମୀ—ନୂଆବୋହୂ, ନୂଆବୋହୂ ! ନୂଆବୋହୂ !

(କିଛି ଉତ୍ତର ନାହିଁ)

ଯଦୁ—(ଦୂରରୁ) ରମୀ, କଅଣ, ଶୁଣିଲେ ?

ରମୀ—ନାଁ—ନୂଆବୋହୂ, ନୂଆବୋହୂ ! ମଲୋ, କେତେ ଶୋଇଚ ମ ! କ ନିଦ ସେ ? ଦିନ ଘଡ଼ିଏ ହେଲାଣିଟି ! ନୂଆବୋହୂ !

(କବାଟ ଫିଟିଲା)

ସାନବୋହୂ—ତମେ କେମିତେ ଆଜ ଆଇଲ ମ ରମୀ ଦେଈ ! କଅଣ ?

ରମୀ—କଲୋ, ସେ କଅଣ ? ମୁଣ୍ଡ ସାଲୁବାଲୁ, ଆଖି ଦି'ଟା ରଙ୍ଗା ପଡ଼ିଚ ମନ୍ଦାର ଫୁଲ ପରି । ଲୁହ ଧାର ଧାର ବୋହି ଯାଉଛି—ମୁହଁ ଫୁଲିଚ—ଏମିତି କାହିଁକ ବା ?

ସାନବୋହୂ—କାହିଁକ ଡାକୁଥିଲ ?

ରମୀ—କାହିଁକ ଡାକୁଥିଲି ? ଦିନ କେତେ ହେଲାଣି ? ଘର ଦୁଆର ଏମିତି ପଡ଼ିଥିବ ? ଦୁଆରେ ଗୋବର ପାଣି ପଡ଼ିବ ନାଇଁ ? ଏଗୁଡ଼ାକ କ ଲକ୍ଷ୍ମୀଛଡ଼ା କଥା ?

ସାନବୋହୂ—ଲକ୍ଷ୍ମୀ କାଲି ରାତିରୁ ଗୁଡ଼ଗଲେଣି ନାଁ—ଆଉ ଗୁଡ଼ିବାକୁ ଅଛି ? ପଡ଼ିଥାଉ ସେ ଘର ଯେମିତି ।

ରମୀ—କଅଣ ତମେ ଦାନ୍ତ ଘଷିବ ନାହିଁ, ଗାଧୋଇବ ନାହିଁ, ଚୂଲି ଲଗିବ ନାଇଁ ?

ସାନବୋହୂ—କାହାପେଇଁ ?

ରମୀ—କାହିଁକ, ଯଦୁ ଭାଇ ପାଇଁ ?

ସାନବୋହୂ—ଭାଇଗଲେ, ଭାଉଜ ଗଲେ, ଆଉ ମୁଁ ନିଆଁ ନାଗୀ—ଥାଇ କଅଣ ଘର ଟେକ ଧରିବ ? ହେଇଟି ନିଅ, ସବୁ ଘର ଗୁଞ୍ଜ । ମୋ'ର ମୁହଁ ପୋଡ଼ିବାକୁ ଏସବୁ ଭିଆଣ ।

(ଗୁଞ୍ଜ ତଳେ ଫିଙ୍ଗିଦେଲେ)

ଯଦୁ—(ପ୍ରବେଶି) ଗୁଞ୍ଜ ସବୁ କଅଣ ଦେଇ ଯାଇଛନ୍ତି ଭାଇ !

ସାନବୋହୂ—ହଁ, ଯୋଉ ଖଣ୍ଡିକ ପିନ୍ଧିଥିଲେ, ସେଇ ଖଣ୍ଡିକ ପିନ୍ଧି ବାହାରିଗଲେ ରାତାରାତି । ହେଇଟି ଥାଳିଆରେ ଅପାଙ୍କ ହାତର ଗହଣାପତ୍ର । କାଚ ହାଖଣ୍ଡି ଖାଲି ଅହ୍ୟ ଚିହ୍ନ ବୋଲି ପିନ୍ଧିକରି-ଗଲେ । ଘରୁ ଗୋଟିଏ ପଇସା ନେଇ ନାହାନ୍ତି । ସିନ୍ଦୂକ ଗୁଞ୍ଜ ସହିତେ ସବୁ ଅଛି । ଦେଖ, ନିଅ । ଧନକୁ ଖାଇ ଘର କର । ମୁଁ ବାପ ଘରକୁ ଯିବି ।

ଯଦୁ—ଭାଇ ହାହେ ହାହେ ଗଲେ ?

ସାନବୋହୂ—କାହାପେଇଁ ସେ ସବୁ ବୁଝୁଥିଲେ ? ବୁଝା ନାଇଁ—ଶୁଝା-ନାଇଁ, ପଚରା ନାଇଁ-ଉଚରା ନାଇଁ—ରାଗ, ରୁଷା-କାହିଁକି ? ଆଜି ମାଆ ପେଟର ଭାଇ ତମର ହେଲେ ନାଇଁ, ମାଆଠଉଁ ବଳି ଯେ ତମକୁ ପାଳିଥିଲେ, ସେ ତମର ହେଲେ ନାଇଁ—ଆଉ ମୁଁ ତ ପର ଘର ଝିଅ । ଆସିବାର ବରଷ ପୂରିନାଇଁ—

ଯଦୁ—ଏଗୁଡ଼ା ତୁମେ କଅଣ କହୁଚ ?

ସାନବୋହୂ—ମୁଁ ଯାହା କହୁଛି—ତମେ କହିଲ ଦେଖି ତାଙ୍କର କି ଦୋଷ ?

ଯଦୁ—ତମେ ଜାଣିନା—ସେ ଆଉ ସେ ଭାଇଭାଉଜ ହେଇ ନାହାନ୍ତି ।

ସାନବୋହୂ—ସେ ନାହାନ୍ତି ନା ତମେ ନାହଁ । ଦେଖିଲ ତ, ଘରସଂସାର ତମ ମୁହଁକୁ ଫୋପାଡ଼ି ଦେଇ—

ରମୀ—ସତେ ଯଦୁଭାଇ, କଚ୍ଛି ତ କଥା ନଥିଲା । ହୂନଭୁତ ! ଶୁଉଣୁ ଶୁଉଣୁ ରାତିଟାକରେ ଏତେ କଥା ।

ଯଦୁ—ଖୁଡ଼ିଙ୍କର ନୁହଁ, ଖୁଡ଼ୁଜଙ୍କର ଯେତେକ ଗୁଣ ବାହାରିଲାଣି । ଆଚ୍ଛା, ତୁ କହିଲୁ, ତୁ କାହିଁକି ଆସୁ ନଥିଲୁ ?

ରମୀ—ମୋ କଥା ଦୋଷରା । ଦିନେ ନାଇଁ କାଲେ ନାଇଁ । ସେଦିନ ସାନ ନୂଆବୋହୂ ପାଖେ ବସିଛି, ଅକାରଣଟାରେ ମତେ ଦେଖେଇ ଶିଖେଇ ଯେତେକ କହିଲେ ବଡ଼ ନୂଆବୋହୂ ।

ଯଦୁ—କାହିଁକି କହିଲେ ଭଲା ?

ରମୀ—କେଜାଣି ? ସେ ଦୁଃଖୀ କଅଣ ନଗେଇ ବଗେଇ କହିଥିବ । ଘର ବଶ୍ୱାସୀ ତ ହେଇଥାଏ । ଆମେ ଦିହେଁ କଥାଭାଷା ହଉଚୁଁ, ଦୁଃଖୀ ଦେଖିକରି ଗଲା । ସାଙ୍ଗେ ସାଙ୍ଗେ ତ ବଡ଼ ନୂଆବୋହୂ ଯେତେକ ଝାଡ଼ିଲେ ।

ଯଦୁ—ଦୁଃଖୀ ଥିଲା ଏଇଠି ? ସେସବୁ ଶୁଣିଚ ?

ରମୀ—ମଲା, ପଚୁରୁନାଁ ସାନ ନୂଆବୋହୂଙ୍କୁ । ଯୋଗକୁ ସେଇଦିନ ନନ୍ଦ ଭୁଠରେ ବସି ଯେତେକ ତମ ନାଆଁରେ ଏଣୁତେଣୁ କେତେ କଥା ବକୁଥିଲା ଯେ, ମୁଁ ବାହାରିଲାକୁ ମୋ ସାଙ୍ଗେ କଳି ନଗେଇ ବସିଥିଲା ।

ଯଦୁ—ମୋ ନାଆଁରେ ବକୁଥିଲା ?

ରମୀ—ହଁ, ତମେ ପରା କୁଆଡ଼େ ବନା ଶିଅଳ ସାଥିରେ ପଡ଼ି ତାଡ଼ି, ମଦ ଖାଉଚ ଏବେ ?

ଯଦୁ—ମୁଁ ? ତାଡ଼ି-ମଦ ?—

ରମୀ—ଏଁ ? ମୁଁ କଅଣ ଏକାଥିଲି ? ସାଇ ମାଇପେ ଗଦା—ଗାଧୁଆ ବେଳଟା—ନନ୍ଦ ଭୁଠ କଥା—ଜାଣୁନା ? ହରିଆମାଆ ମାଉସୀ ମତେ ପଚ୍ଛରେ ଯେତେକ ବକିଲା-ମୁଁ କାହିଁକି ଦୁଃଖୀ ସାଙ୍ଗରେ ମୁହଁକୁ ମୁହଁ ଦେଲି ବୋଲି ।

ଯଦୁ—(ଗମ୍ଭୀର ହୋଇ) ହୁଁ ।

ସାନବୋହ୍ନୂ—ତାଡ଼ିମଦ ଖାଇ ତେବେ ଏତେ ଗୁଣ ତମର ? ଯେବେ ଧରମ ଭୟ ଅଛି, ଭଲ ଗତ୍ତ ଅଛି—ଯା, ଭାଇ ଭାଉଜଙ୍କ ଗୋଡ଼ ଧରି ଘରକୁ ଫେରାଇ ଆଣ । ନଇଲେ ଏ ଘରେ ଚୂଲି ଲାଗିବ ନାହିଁ । ମତେ ଘରକୁ ବଦା କରିଦିଅ ।

ଯଦୁ—(ପୁଣି ପୂର୍ବ ପରି) ହୁଁ । (ଯିବାକୁ ଉଦ୍ୟତ)

ରମୀ—ଯେ କି କଥା ମ ? କାଲଠୁଁ ଖିଆନାହିଁ, ପିଆ ନାହିଁ, ଅଗାଧୁଆଟାରେ ଫେର୍ କୁଆଡ଼େ—ଏ ନୂଆବୋହ୍ନୂ ! ତାଙ୍କୁ—

ସାନବୋହ୍ନୂ—ନାହିଁ ରମୀ, ସେ ଯାଆନ୍ତୁ ।

ରମୀ—ଯଦୁ ଭାଇ, ଯଦୁ ଭାଇ ! ମ, ଉପାସ ଭୋକରେ ଫେର୍—ଏ ଯଦୁ ଭାଇ—

(ଡାକି ଡାକି ଗଲା)

———

## ( ଏଗାର )

(ପଥ—ମଧୁ ମହାପାତ୍ର ରିକ୍ସା ଚଲାଉଚି, ପାଖରୁ ସାଇକେଲ ଘଣ୍ଟି ଶବ୍ଦ)

ଭଦ୍ରଲୋକ—ଏ ରିକ୍ସା, ଏ ରିକ୍ସା । ଆରେ, ତତେ କଅଣ ଶୁଭେ ନାହିଁକି ? ମୁଁ ବାଆଁକୁ କଟେଇ କଟେଇ ଯାଉଛି—ତୁ ମଡ଼େଇ ମଡ଼େଇ ଆସୁଛୁ ! ଘଣ୍ଟି କି ତୋ କାନକୁ ଶୁଭୁନାହିଁ ? ବଣୁଆ କୋଉଠିକାର୍ । ବଦମାସ୍ ।

ରିକ୍ସାବାଲା—ଆଜ୍ଞା, ମୁଁ ନୂଆ ଲୋକ । ଆଜି ରିକ୍ସା ଧରୁଛି । ଜାଣିନାହିଁ ଆଜ୍ଞା !

ଭଦ୍ର—ଜାଣିନାହିଁ ? ରିକ୍ସା ଟାଣୁଚୁ କେମିତି ? ବନ୍ଦଜଇବ ଧରି ଗାଲକୁ ଗାଲକୁ ଦି'ଚାପଡ଼ ଯେ, ତୋ ଅଜଣା ପଣିଆ ଛାଡ଼ିଯିବ । ଗାଲୁଆ, ବଦ୍‌ମାସ୍ !

ରକ୍ସା—ମାର ପଛେ ବାବୁ ! ମୁଁ ତ ଜାଣିନାହିଁ ବୋଲି ମାନୁଛି, ଆଉ—

ଭଦ୍ର—ଯାବେ ଯା, ବାଆଁ କୁ କଟେଇ ନେ । ଜଙ୍ଗଲି କୋଉଠିକାର !

(ଘଣ୍ଟି ଦେଇ ଚାଲିଗଲେ)

———

## ( ବାର )

(ଦୁଃଖୀଘର—କବାଟ ବାଡ଼ଆ ଶବ୍ଦ)

ଯଦୁ—ଦୁଃଖୀ, ଦୁଃଖୀ ଏ ଦୁଃଖୀ ! କଅଣ କବାଟ ଫିଟେଇବୁ ନା ଧକ୍କା-ମାରି ଏଇନେ—

(ରମୀ ଆସିଲା)

ରମୀ—ଯଦୁ ଭାଇ !

ଯଦୁ—କିଏ ? ରମୀ ? ତୁ କୁଆଡ଼େ ଆଇଲୁ ?

ରମୀ—ତମରି ପଛେ ପଛେ । ଏଠି କଅଣ କରୁଚ ?

ଯଦୁ—ଆସିଚି ଦୁଃଖୀକି ପଦେ ପଚାରିବ—ମୁଁ ବୁଝିସାରିଲଣି ସବୁ । ପଚାରିବ ସେ କେତେ ପଇସାର ପିଠା କିଣିଥିଲା ।

ରମୀ—ପିଠା ? କି ପିଠା ? ତମ ମୁଣ୍ଡ କ'ଣ ବଗିଡ଼ି ଗଲାଣି କି ?

ଯଦୁ—ହୁଁ । ଦୁଃଖୀ, ଦୁଃଖୀ !

ରମୀ—ଆରେ, କାହିଁକି ତାକୁ ଡାକ ପକେଇଚ ?

ଯଦୁ—ତା ସାଙ୍ଗେ ମୋର କଥାବାର୍ତ୍ତା ଅଛି । ତୁ ଯା—ଏଠିକି କଅଣ କରିବାକୁ ଆସିଚୁ ? ଘରକୁ ଯା ।

ରମୀ—ତେବେ ଘରକୁ ଚାଲ ।

ଯଦୁ—ନାଁ (ଦୁଆର ବାଡ଼େଇ) ଦୁଃଖୀ, ଦୁଃଖୀ ! ଆରେ, କବାଟ ଫିଟା ।

ରମୀ—ସତରେ ତମ ମୁଣ୍ଡ ଖରାପ ହୋଇଯାଇଛି । ଦେଖୁଚ ତ ବାହାରୁ କୋଲପ ଦିଆଯାଇଛି । ଦୁଃଖୀ ଏଇନେ କୋଉଠି ନାଇଁ କୋଉଠି ଥିବ କି ତମ ଘର ସୁଲଖ ବାରୁଥିବ—ତାକୁ କାହିଁକି ଖୋଜା ପଡ଼ିଚି ଯେ ?

ଯଦୁ—ଓ, ମୋ ଘର ଭାଙ୍ଗିଦେଇ, ସେ ଘରେ ନିଶ୍ଚିନ୍ତରେ ରହିବ ?

(ଖୁଣ୍ଟ ଓ କବାଟ ଭାଙ୍ଗିବା ଶବ୍ଦ)

ରମୀ—ଆରେ, ଆରେ ! ଯଦୁଭାଇ, କୁଡ଼ିଆ ଖଣ୍ଡକ ଗଲା ଯେ ତା'ର ! ତେମେ କାହିଁକି ଭାଙ୍ଗୁଚ ?—ଛି !

(ଯଦୁ ହାତକୁ ଧରିଲା)

ଯଦୁ—ଛାଡ଼, ହାତ ଛାଡ଼ । ନଇଲେ ଫେର୍ ଏଇନେ—

ରମୀ—କଅଣ ଫେର୍ ଏଇନେ ? ମାରିବ ମତେ ? ତମ ଘର ଯେମିତେ ସେ ଭାଙ୍ଗିଚି, ତା ଘର ସେମିତି ଦଇବ ଭାଙ୍ଗିବ । ତେମେ କାହିଁକି···

ଯଦୁ—ଭଗବାନ ନିଜେ ଆସି ଭାଙ୍ଗନ୍ତି ନାଇଁ—ଏଇ ମଣିଷ ହାତେ ଭଙ୍ଗାନ୍ତି । ପାଇଲି ନାଇଁ ତାକୁ—ନଇଲେ ତା' ରକ୍ତ ଚିତା···

(ପୁଣି ଘର ଟାଣିଲା)

ରମୀ—ଯଦୁ ଭାଇ ! ତୁମେ ଆଗେ ଘରକୁ ଚାଲିଲ—

ଯଦୁ—ନାଁ, ନାଁ, ମୋର ଘର କାହିଁ ଯେ ଘରକୁ ଯିବି ? ସେ ଘର ତତେ ଲାଗିଲା···ମୁଁ ଗଲି ! (ବାହାରିଗଲେ)

ରମୀ—ଏତେବେଳେ ତୁମେ ପୁଣି କୁଆଡ଼େ ?···ଯଦୁଭାଇ ! ଏ ଯଦୁଭାଇ ! ମଲା, ଶୁଣମ—ଯଦୁଭାଇ ! (ପଛେ ପଛେ ଗଲା)

———

## ( ଛଅ )

(ପଥ—ମଧୁ ରିକ୍ସା ଟାଣୁଛି)

ମଧୁ—ହଁ, ଭଗବାନ ! (ଦୀର୍ଘ ନିଃଶ୍ୱାସ) ମଧୁ ମହାପାତ୍ର କର୍ମରେ ଫେର୍—
ହଉ ! (ରିକ୍ସା ଘଣ୍ଟି ଶୁଭିଲା)

ଦୂରରୁ ଯଦୁ—ଭାଇ ! ଭାଇ !

ମଧୁ—(ଚମକିବା ପରି) ଏଁ, ଭାଇ ! (ତାଚ୍ଛଲ୍ୟ ହସ ହସି) ଭାଇ ! ଆଉ ଭାଇ, ବେଳ ଗଡ଼ିଗଲାଣି—ମାଲିକଙ୍କୁ ରିକ୍ସା ବୁଝେଇବାକୁ ହବ ! ତରନାହିଁ ମୋର ବାବୁ ଏଇନେ କାହାର ଡାକ ଶୁଣିବାକୁ ।
(ରିକ୍ସା ଘଣ୍ଟି ବଜାଇ ଚାଲିଲା)

ଯଦୁ—ଭାଇ, ଭାଇ ! (ଦୂରରୁ)

ମଧୁ—କିଏରେ ତୁ ? କାହିଁକି ମିଛରେ ସେ ପଦ ମୋ କାନରେ ପକଉଛୁ ଆଉ ? ଆରେ ଏ ଦୁନିଆଁରେ ମଧୁ ମହାପାତ୍ରର ଆଉ ଭାଇ କୋଉଠି ଅଛି ? ରଖ, ରଖ । ମଧୁ ମହାପାତ୍ର ବହୁତ ଭାଇ ଦେଖିଛି । ଆଉ ସେ ଡାକ ଶୁଣିବାକୁ ମୋର ତର ନାହିଁ ।
(ଆଗକୁ ଚାଲିଗଲା ରିକ୍ସା ଘଣ୍ଟି ବଜାଇ)

ଯଦୁ—(ପହଞ୍ଚି) ଭାଇ ! ମୁଁ ଯଦୁଆ ପରା !

ମଧୁ—ଏଁ, ଯଦୁ !

ଯଦୁ—ଭାଇ, ସବୁ ଦୋଷ ମୋର, ତମେ ଘରକୁ ଚାଲ ।

ମଧୁ—ଆରେ, ତୁ ଏମିତି ଶୁଖିଯାଇଚୁ କାହିଁକିରେ ? ଦେହ ମୁହଁ କଳାକାଠ ? ଧନ କେଉଁଠାରେ ଚିହ୍ନି ହଉନାହୁଁ । କୁଆଡ଼େ ଆଇଲୁ ?

(ଯଦୁ ମଧୁର ଗୋଡ଼ଧରି କାନ୍ଦିଲା । ମଧୁ ତାକୁ କୁଣ୍ଢାଇ ପକାଇ କାନ୍ଦିଲା ।)

———

# ଜଳ ଜଞ୍ଜୀର

(ବର୍ମା—ପ୍ରୋମ ସହର । ବୃନ୍ଦାବନ ମହାନ୍ତିଙ୍କ ବସା । ଘର ଭିତରେ ଲୋକଥିବାର ଜଣାପଡୁଛି । ବାହାରେ କେହି ନାହିଁ । ଦୁଆରେ ପରଦା ଝୁଲୁଛି । ପୋଷ୍ଟମ୍ୟାନ ଆସିଛି । )

ପୋ: ମ୍ୟାନ—(ଦୁଆରର କଡ଼ା ହଲେଇଲା । କେହି ଶୁଣିଲେ ନାହିଁ । ଥରେ ଦୁଇଥର କଡ଼ା ହଲାଇ ପୁଣି ଡାକିଲା) ବାବୁ ! ବାବୁ ! (ଭିତରୁ ଆସିଲା ବୃନ୍ଦାବନ ବାବୁଙ୍କ ବର୍ମୀ ଚାକର, ପିନ୍ଧିଛି ଖଣ୍ଡେ ରଙ୍ଗୀନ ଲୁଙ୍ଗୀ, ହାଫ୍ ସାର୍ଟ ଆଉ ମୁଣ୍ଡରେ ତାର ଗୁଡ଼ା ହୋଇଛି ଖଣ୍ଡେ ରୁମାଲ । ଭଙ୍ଗା ଭଙ୍ଗା ହିନ୍ଦୀରେ ପଚାରିଲା ପୋଷ୍ଟମ୍ୟାନକୁ ସେ—)

ଚାକର—କ୍ୟା ଚାହାତା ? କୋନ୍ କୋ ମାଙ୍ଗତା ?

ପୋ: ମ୍ୟା:—(ଚିଠି ବାଢ଼ୁ ବାଢ଼ୁ) ଚିଠି, ଚିଠି ।

ଚାକର—ଚିଠି ବାବୁ, ୟାହାଁ ନହିଁ ରହେତେଁ ହ୍ୟୁଁ । । କହିଁ ଆଗେ ଦେଖୋ । ଚଲୋ । (ଚାଲି ଯାଉଥିଲା ଘର ଭିତରକୁ)

ପୋ: ମ୍ୟା:—ଆରେ ଚିଠିବାବୁ ନହିଁ । ବୃନ୍ଦାବନ ବାବୁକା ଚିଠି । ଯେ ଲେ ଯାଓ ।

ଚାକର—ଠଏରୋ । (ଭିତରକୁ ଗଲା)

( ତଉଲିଆରେ ହାତ ପୋଛୁ ପୋଛୁ ବୃନ୍ଦାବନ ବାବୁ ଆସିଲେ )

ବୃନ୍ଦାବନ—କିଏ ସୁଦାମ ! ମୁଁ ଅଫିସ ବାହାରିଥିଲି । କଅଣ ଚିଠି ଅଛି ?

ପୋ: ମ୍ୟା:—ଆଜ୍ଞା ! ନମସ୍କାର (ଚିଠି ଦେଲା)

ବୃନ୍ଦାବନ—ନମସ୍କାର (ଚିଠି ନେଲେ)


Digitised by srujanika@gmail.com

ପୋ: ମ୍ୟା:—ଆଚ୍ଛା ଏକ ଚାକର ରଖିଛନ୍ତି ଯେ, ସେ ଚିଠିବାବୁ ବୋଲି ବୁଝୁଁଛି ।

ବୃନ୍ଦାବନ—ହୁଣ୍ଡା ଟୋକାଟେ ।

ପୋ: ମ୍ୟା—(ହସି) ମତେ କହୁଚ, ଚିଠି ବାବୁଙ୍କ ବସା—-ଆଗରେ ଦେଖ୍ । (କହି କହି ଚାଲିଗଲା)

ବୃନ୍ଦାବନ—(ହାତ ମୁହଁ ପୋଛି ସାରି ବସି ଚିଠିଟି ଚିରିଲେ—-ପଢ଼ି ଖୁବ୍ ପ୍ରସନ୍ନ ହେବାପରି ଦେଖାଗଲା । ଡ଼ାକିଲେ ପୁଅକୁ) ପ୍ରଫୁଲ୍ଲ ! ଖଣ୍ଡେ ପାନ ଆଣିଲୁ ବାପା ! ଆଉ ତୋ ବୋଉକୁ ଡ଼ାକି ଦେ । (ଅଳ୍ପ ସମୟ ପରେ ପ୍ରଫୁଲ୍ଲ ପାନ ନେଇ ଆସିଛି, ବୃନ୍ଦାବନ ବାବୁ ଚିଠିଟି ମନଧ୍ୟାନ ଦେଇ ପଢ଼ୁଛନ୍ତି ଆନନ୍ଦରେ ।)

ପ୍ରଫୁଲ୍ଲ—ବାପା, ପାନ ।

ବୃନ୍ଦାବନ—( ହାତ ବଢ଼ାଇ ପାନ ନେଲେ, ଚିଠିରେ ଆଖିଥାଏ ) ଜବାବ ଆସିଗଲା । ତମେ ପରା ସତରେ ମୋର ଗୋଟିଏ ଲକ୍ଷ୍ମୀ ଠାକୁରାଣୀ । ଦେଖିଲଣି ନା ଚିଠି ( ଚାହିଁଲେ ) ଆରେ । ବୋଉ କାହିଁ ? ତତେ କହିଲି ପରା ବୋଉକୁ ଡ଼ାକିଦେବାକୁ ।

ପ୍ରଫୁଲ୍ଲ—ବୋଉକୁ ଡ଼ାକିବି, ଏଠିକି ?

ବୃନ୍ଦାବନ—ଡ଼ାକ ଡାକ—ଆସନ୍ତୁ, କେହି ନାହିଁ ।

( ବୃନ୍ଦାବନ ବାବୁଙ୍କ ସ୍ତ୍ରୀ ପରଦା ଦରମେଲା କରି ଆସି ମୁହଁ ଦେଖାଇଲେ )

ସ୍ତ୍ରୀ—ମତେ ଡ଼ାକୁଚ ?

( ପ୍ରଫୁଲ୍ଲ ପାନ ଥାଳିଆ ବଜାଇ ବଜାଇ ଚାଲିଗଲା ଭିତରକୁ )

ବୃନ୍ଦାବନ—ଦେଖ, ଚିଠି ପଢ଼ । ଭଗବାନ ଆମ ଗୁହାରି ଶୁଣିଲେ । ହେଇଗଲା, ଏଥର ତମ ଯୋଗାଡ଼ରେ ଲାଗ । ବାବା, ଧନଗଣ୍ଡ

ମୋତେ ବସେଇ ଉଠେଇ ଦଉନଥିଲ । ଯେତେବେଳେ ବରାଦ ଆସିବ, ସେତେବେଳେ ପିନା ହବ ! ସବୁଥିରେ ତୁମର ଖାଲି ଉଚ୍ଛନ୍ନ ।

ସ୍ତ୍ରୀ —କଣ ଚିଠି ସେ ? କୋଉଠୁ ଆସିଚ ?

ବୃନ୍ଦାବନ—ଆସିଚ ତମ ଜ୍ୱାଇଁ ଘରୁ—ନିଅ । ତମ ଉର୍ମିଳା ଦେଈ କୁଆଡ଼େ ଗଲେ ?

ସ୍ତ୍ରୀ—ଉର୍ମୀ ସ୍କୁଲକୁ ଗଲାଣି ।

ବୃନ୍ଦାବନ—ହଁ ହଁ, ମୋର ମନେ ନଥିଲା । ଚିଠିଟି ପଢ଼ ।

ସ୍ତ୍ରୀ—ପଢ଼ି ଦଉନା ।

ବୃନ୍ଦାବନ – ଆସ, ଯୁଆଡ଼କୁ ଆସୁନା କାହିଁକି ? କେହି ନାହାନ୍ତି ଯେ—ଯେ ତ ଗୋଟାଏ ଖବର କାଗଜ । ମୋଟ ଉପରେ ବରଘର ଖ୍ରଜ । ପିଲାଟି ବଡ଼ ଭଲ । ଦେଖିଥିବ ତମେ । ଆମ ରଘୁଭାଇଙ୍କ ପୁଅ ସାଙ୍ଗର ତ ।

ସ୍ତ୍ରୀ—ପିଲାଦିନେ ଦେଖିଥିବ । ଗାଆଁ ଭୂଇଁ ଛାଡ଼ିବାର ତ ସାତ ବରଷ ହେଲାଣି । କଏ କେଉଁଠି-ସେ ଖବର କଅଣ ଜଣା ପଡ଼ୁଚି ଆଉ ? ଓଡ଼ିଶା ବୋଇଲେ-ମତେ ଆର ଜନମ କଥାପରି ଲାଗୁଚି । ପିଲାଟି କଅଣ ପଢ଼ୁଚି ?

ବୃନ୍ଦାବନ—I. A. ରେ ଫାଷ୍ଟ ହେଇଛି—B. A. ପଢ଼ୁଛି । ଭଲ ପଢ଼ୁଚି, ଲୁଖଲ ପିଲା । ବାପ କେମିତି;

ସ୍ତ୍ରୀ—ଯୋଉଠି ପଡ଼ିଥିଲା, ସେଇ ଯାଗା ଯେ ନା ଆଉ—

ବୃନ୍ଦାବନ—ହଁ, କହୁନଥିଲି ତମକୁ ଚିଠି ଦେଇଚ ବୋଲି । ଅବିଶ୍ୱାସ କରୁଥିଲ ପରା ? ଦେଖ, ତମ ଜାତିଟା ପରା ଆମକୁ ଅବିଶ୍ୱାସ କରି କରି ଗଲା ।

ସ୍ତ୍ରୀ—ହଁ, ଗୋଟାଏ ଗଡ଼ ଜିଣିଚ ! ଜାତି ଉଦ୍ଧେଇବ ନାଇଁ ? ଝିଅ ବୋଝ ଯାହାର, ସେ ଜାଣେ । ଉର୍ମୀକି ଚାହିଁଲେ ମୋ ଆଖି ଫାଟି ପଡ଼ୁଚି ।

ବୃନ୍ଦାବନ—କିନ୍ତୁ ଏ ବର୍ଷ ବାହାଘର କରିବାକୁ ବର-ବାପ ବାଳକୃଷ୍ଣ ବାବୁ ନାରାଜ ।

ସ୍ତ୍ରୀ—ଫେର୍ ଗୋଟାଏ କେଁ ଅଛିଟି ?

ବୃନ୍ଦାବନ—ପିଲାଟି ପଢୁଚି—ପଢ଼ାରେ ବାଧା ଘଟିବ । ହେଲା ଏବେ, ଆସନ୍ତା ବର୍ଷରେ ତ ହବ । ମୁଁ ତାକୁ ବିଲାତ ନ ପଠେଇ ଶୁଣୁଚି ?

ସ୍ତ୍ରୀ—ତା'ହେଲେ ମହାପ୍ରସାଦ ନିବନ୍ଧଟା ସାରିଦିଅ—ଆମେ ହେଲେ ନିଶ୍ଚିନ୍ତ ହେଇଯିବା ।

ବୃନ୍ଦାବନ—ମୁଁ ଆଜି ତାର କରି ଦଉଚି । ନିବନ୍ଧ ପାଇଁ ସେ ରାଜି ।

ସ୍ତ୍ରୀ—ହଁ ସାରିଦିଅ—ଯାଉ ।

ବୃନ୍ଦାବନ—ଗୋଟିଏ ଦିନ ବୁଝି ବରାଦ କର ।

( ଚପ୍ରାଶୀ ଆସି ପ୍ରଣାମ କଲା )

ଆରେ ରେ । ବେଳ ହୋଇ ଗଲାଣି, ଅଫିସ ଯିବି । ମହନା ! କେତେ ବାଜିଲା ରେ ?

ଚପ୍ରାସୀ—ଆଜ୍ଞା ! କାରଖାନା ଘଣ୍ଟାରେ ଏଗାର ବାଜିଗଲା । ମୁଁ ଆଇଲି । କୁଲିଗୁଡ଼ା ହାଉଯାଉ ହଉଚନ୍ତି । ଗୃହିଣୀ—

ବୃନ୍ଦାବନ—ନାଇଁ ମୁଁ ବାହାରିଲି ତ । ସାଇବ ଆସିଗଲାଣି ପରା ?

ମହନା—ଆସିନାଇଁ ।

ବୃନ୍ଦାବନ—ଓଃ, ରକ୍ଷାହେଲା । ତୁ ଗଲୁ ଖଣ୍ଡେ ରିଲ୍‌ସା ଡ଼ାକିଦେଲୁ । ଗୃହିଣୀ ଆଉ ଯାଇହବ ନାହିଁ । ଉଛୁର ହେଇଯିବ । ଯା—

ମହନା—ଆଣୁଚି ( ଗୃହିଣୀ ଗଲା )

ବୃନ୍ଦାବନ—ଆରେ ମହନା ! ଉମୀ ଦେଈଙ୍କର ବାହାଘର ଠିକ୍ ହେଇଗଲାରେ-ଶୁଣିଚୁ ନା ?

ମହନା—( ଯାଉ ଯାଉ ଫେରି ) କୋଇଠି ହେଲା ? ଆମ ଦେଶରେ ନା ?

ବୃନ୍ଦାବନ—ଆଉ କଉଣ ଏଇ ବର୍ମାରେ ହବ ଅନ୍ତା ?

ମହନା—କେବେ ?


Digitised by srujanika@gmail.com

ବୃନ୍ଦାବନ—ଅଛୁ ଏଇନେ—
ସ୍ତ୍ରୀ—ଗପି ବସିଲଟି ? ସେ ପରା ଗାଡ଼ି ପେଲିଁ ଯିବ ?
ବୃନ୍ଦାବନ—ଓ, ହଁ ହଁ, ଯା ଯା ଯା—

( ମଦନା ଚାଲିଗଲା )

ସ୍ତ୍ରୀ—ଘରକୁ ଆସ । ନୁଗା ପିନ୍ଧ । ଝିଅ ବାହାଘର ଠିକଣା ହେଇଗଲା ବୋଲି କଅଣ ଗାମୁଛା ପକେଇ କାରଖାନାକୁ ଯିବ ? ଆଚ୍ଛା ମଣିଷ ତ ! ଗୋଡ଼ ଆଉ ତଳେ ଲାଗୁନାହିଁ ! ସତରେ ଗୋଟାଏ ଗଡ଼ ଜିଣିଚ !

ବୃନ୍ଦାବନ—ଗଡ଼ ଜିଣିବା ତ ଛାରକଥା—ତମକୁ ଜିଣିଛୁ, ସେଇ ଢେ଼ର । ଧନରତ୍ନ ଖାଲି କଟର କଟର—

( ଭିତରକୁ ଦୁହେଁ ଚାଲିଗଲେ )

---

## ଦ୍ୱିତୀୟ ଦୃଶ୍ୟ

( ପ୍ରୋମ ରାଜପଥ । ଜଣେ ଓଡ଼ିଆ କୁଲି ଅନ୍ୟଜଣକ ଉପରେ ବଡ଼ ବିରକ୍ତ ହୋଇ ଆସୁଛି, ମନେ ମନେ ଗାଳି ଦେଇ ଦେଇ ତାକୁ )

କୁଲି—ଶଳା, ଗରଜ ବେଳେ ହାତ ପତେଇଲୁ । ଗାଆଁ ଭୁଇଁର ବୋଲି ଆମେ ମୁହଁକୁ ଚାହିଁଲୁଁ, ଆମେ ହେଲୁ ଛୋଟଲୋକ ! ଏତେ ବଡ଼ଲୋକ କାହିଁକ ?

( ଅନ୍ୟଜଣକ ପଛରୁ ଆସିଛି ସେହିପରି ରାଗି )

୨ୟ—ହଇରେ, ହଇରେ ଏ ନକଡ଼୍ ନାଥିଆ ! ଶଳା ତମତମ ହଉଚୁ କାହା ଉପରେ ? ବଡ଼ଲୋକ କଅଣ ପଚାରୁଚୁ ?

୧ମ—ଆଉ ? ଟଙ୍କା ନେଲାବେଳକୁ ନେଇଗଲୁ, ଆସି ଛ'ମାସ ହେଇଗଲା, ମାଗିଲାଠୁ କହୁଚୁ କଅଣ ନା—ଛୋଟଲୋକ ମୁଁ ?

୨ୟ—ହଁ, କଶୁର କଅଣ ହେଲା ? ହଁ, ମୁଁ ଧାରଚି—ଏଇଥିକ ତୁ ଶଳା ପାଞ୍ଚଲୋକରେ ମାଗିଲୁ କାହିଁକି ? ମୁଁ ତ ଦେବ ବୋଲି ନାସ୍ତି କରିନାଇଁ ।

୧ମ—ଆରେ, ଭଲଲୋକ ଯେ ! ମାସକୁ ଦିମାସ ହେଲା, ଦିମାସକୁ ଚାରିମାସ—ଚାରିମାସକୁ ଛଅମାସ ବିତିଲା—ତୋ ଗରଜ ବେଳକୁ କାଢ଼ିଦେଲି ମୁଁ, ସୁଝିବାର ନାଆଁ ନାଇଁକି ଗନ୍ଧ ନାଇଁ !

୨ୟ—ଆରେ, ତତେ ପରା ଥରେ କହିଲି, ଆଉ ଦିନ ଚାରିଟା ସବୁରାତ କର । ହପ୍ତା ହଉ—ତୋ ଧନ ଶୁଝିଦେବି । ନ ହେଲା ବେଳକୁ ସୁଧ ଏବେ ନବୁ ।

୧ମ—ସୁଧ ? ଘରି ଦେଲା ବାଲା । ମୂଳେ ମୂଳେ ଆଗେ ଦେଲୁ । ଆରେ, ବେହେଦା ଜାହାଜ କମ୍ପାନିରେ ଚାକିରି କରିଚୁ, ଆଇଲା ଦିନୁଟି ! ଓଜଗାର କରି କଷ୍ଟ ବଳୁନାଇଁ ଯେ, ମୋତେ ତିନଥର ତୁ ହପ୍ତା ଦେଖେଇଲୁଣି ! ମୋର ଗୋଟେ ଗରଜ ପଡ଼ିଚୁ । ଚାଟି ଉପରେ ଚାଟି ଆଉଚି । ଗାଆଁରୁ ତେଣେ ନାଟବନ୍ଦୀ ଖଜଣା ପାଇଁ ଦୁଆରେ ଜୁଲମ ! କୋଉଠୁ ଧାର ଉଧାର କରି ମୋ ଗଣ୍ଡାକ ମତେ ଦେଇ ଦେଲେ ତ ଗଲା । ଏତେକେ ତୋ ବଡ଼ନୋକି ତୋ ପାଖେ, ମୋ ଗ୍ରେଡ଼ନେକି ମୋ ଘରେ ।

୨ୟ—ଧାର ଉଧାର ମାଗିଲେ, ସେଇ ବୃନ୍ଦାବନ ବାବୁ ତ ଗୋଟେ ଲୋକ ଯେ, ସେ କଅଣ ଏଇନେ ଥିବେ ? ସଞ୍ଜବେଳକୁ ସିନା ! ଆଉ ଏଠି କିଏ ଦବ ଯେ—କାହାକୁ ମାଗିବ ?

୧ମ—ମଲା, ଆମ ଦେଶ ଲୋକ କଅଣ ଏଠି ଆଉ ନାହାନ୍ତି ? ଯୁଆଡ଼େ ଦେଖ ସବୁଠି ତ ଆମ ଗାଆଁ ଭୂଇଁର ଲୋକ ଭର୍ତ୍ତି । କେତେ କାନତରାଟି ଅଛନ୍ତି, ଦୋକାନି ଅଛନ୍ତି, ହଳଆ ମୂଲିଆ ଅଛନ୍ତି । କଲ, କାରଖାନା, ସବୁଠି ତ ଆମର ମଣିଷ । କାହାକୁ ଜଣକୁ କହ ।

୨ୟ—ଆରେ ସଭିଏଁ ତ ଯେଝା କାମକୁ ଯିବେଣି ବାହାରି, ସଞ୍ଜ ହେଲେ ଯିନା ।

୧ମ—ହେଲା ହେଲା—ତୁ ସଞ୍ଜବେଳକୁ ଦେଲୁ ଏବେ । ଆଜ ପାଇଲେ ମୁଁ କାଲିକ ମଣିଅରଡ଼ କରିଦେବ ।

୨ୟ—ହଉ, ଦେଇଦେବ । ଯା—

୧ମ—ହଁ, ଦେଖ—ବାକ ଆଜିରୁ ଫେର୍ କାଲି ଯେମେତେ ନ ହୁଏ ।

(ଚାଲିଗଲା)

୨ୟ—(ବଟୁଆରୁ ପାନ କାଢ଼ି ଚୂନ ଲଗେଇଲା) ମଲା, ବୃନ୍ଦାବନ ବାବୁ ଯେବେ ନ ଦେବ । କହିଲା—ଆଜିରୁ କାଲି ଯେମେତେ ନ ହୁଏ ! ବଡ଼ଲୋକ ଉଦ୍ଧୋଉଚ ମୋର ? କରେ, ଧାର ଉଧାର କଅଣ ଆଉ ଗରିବ ଲୋକ କରନ୍ତି ? ଯେତେ ବଡ଼ଲୋକ ତାଙ୍କର ସିନା କରଜ ! ଆଉ·ତୁ ଶଳା ମଲା ମୁଣ୍ଡିଆ—ତୁ କଅଣ ଧାର କରଜ ଧନ ଜରେଇ ପାରିବୁ ? (ପାନ ଖାଉ ଖାଉ ଚାଲି ଯାଉଥିଲା—ଜଣେ ବର୍ମାକୁ ଆସିଥିବା ଓଡ଼ିଶାବାସୀ ନୂଆଲୋକ ପଛରୁ ତାକୁ ଡାକିଲା)—

ଆଗନ୍ତୁକ—ହୋ-ହୋ ଭାଇ, ଶୁଣିଲ ଶୁଣିଲ ।

( ୨ୟ କୁଲ୍ଲା ରହିଗଲା ଟିକିଏ )

୨ୟ—ମତେ ଡାକିଲ ?

ଆଗନ୍ତୁକ—ହଁ, ତେମେ କଅଣ ଏଇ ପ୍ରୋମ୍ ସହରରେ ଥାଅ ?

୨ୟ—ହଁ ।

ଆଗନ୍ତୁକ—ବୃନ୍ଦାବନ ବାବୁଙ୍କୁ ଜାଣିଚ କି ?

୨ୟ—କୋଉ ବୃନ୍ଦାବନ ବାବୁ ?

ଆଗନ୍ତୁକ—ତମ ଘର କୋଉଠି କହିଲ ?

୨ୟ—କଟକ ଜିଲ୍ଲା—ଓଡ଼ିଶା । ତମ ଘର ?

ଆଗନ୍ତୁକ—ମୁଁ ବି ସେଇ କଟକ ଜିଲ୍ଲାର ଲୋକ । ନୂଆ ଆସିଛି, ବୃନ୍ଦାବନ ବାବୁଙ୍କ ବସାକୁ ଯିବି । ବାଲିକୁଦା ଥାନାର ସେ—ବୃନ୍ଦାବନ ମହାନ୍ତି । ଜାଣିଚ ତାଙ୍କୁ ?

୨ୟ—ହଁ, ଜାଣିଚି ଯେ—ସେ ତ ଏତେବେଳେ ଘରେ ନ ଥିବେ । ଅଫିସ ଯିବେଣି ।

ଆଗନ୍ତୁକ—(ପକେଟରୁ ଠିକଣା ଟିପା କାଗଜ କାଢ଼ି) ହଁ, ଇମ୍ପିରିଆଲ ଟୋବାକୋ କମ୍ପାନୀର ଏକାଉଣ୍ଟେଣ୍ଟ ସେ ।

୨ୟ—କଅଣ ବସାକୁ ଯିବ, ନା ଅଫିସକୁ ଯିବ ?

ଆଗନ୍ତୁକ—ଆଗ ଦେଖା ହେବା ଟିକିଏ ଦର୍କାର ।

୨ୟ—ମୁଁ ତ ସେଇଆଡ଼େ ଯିବି । ଆସ, ଦେଖେଇ ଦେବି ।

ଆଗନ୍ତୁକ—ଓଃ, ବହୁତ ଖୋଜିଲିଣି । ସକାଳୁ ବୁଲୁଚି । ଚାଲ ଚାଲ । ଲୁଗାପଟା ମୋର ସବୁ ଗୋଟେ ହୋଟେଲରେ ରଖିଦେଇ ତ ଗଲି ବୁଲୁଚି ମୁଁ ଗଳି କନ୍ଦି, ସହରଯାକ ।

( କହୁ କହୁ ଚାଲିଗଲେ ଦୁହେଁ )

---

## ତୃତୀୟ ଦୃଶ୍ୟ

( ରେଙ୍ଗୁନ୍—ଜୟନ୍ତ ମହାନ୍ତିଙ୍କ ଘର । ଘରର ଜିନିଷପତ୍ର ଏଣେତେଣେ ପଡ଼ିଛି—ତଳେ ଖଣ୍ଡିକେତେ ଖବର କାଗଜ ପଡ଼ିଛି । ଜୟନ୍ତ ଜିନିଷ ପତ୍ର ସଜାଡ଼ିରଖି ବନ୍ଧାବନ୍ଧିରେ ବ୍ୟସ୍ତ—ବାହାରୁ ତାଙ୍କ ବନ୍ଧୁ ରାମଲିଙ୍ଗମ୍ ଡାକିଲେ ).

ରାମ—ମହାନ୍ତିବାବୁ ! ମହାନ୍ତି ବାବୁ ! ( ସାଇକେଲ୍ ଘଣ୍ଟି ଶୁଭିଲା )

ଜୟନ୍ତ—କିଏ ରାମଲିଙ୍ଗମ୍ ? ଭିତରକୁ ଆସ ।

( ରାମଲିଙ୍ଗ୍ମ ଭିତରକୁ ଆସିଲେ )

ରାମ—କଅଣ ପୁଣି ଠିକ୍ କଲେ ?

ଜୟନ୍ତ—( ସେହିପରି ବନ୍ଧାବନ୍ଧିରେ ବ୍ୟସ୍ତ ଥାଇ ) ଯାହା ଦେଖୁଚ ।

ରାମ—ତା'ହେଲେ କଅଣ ନିଧାର୍ଯ୍ୟ ରେଙ୍ଗୁନ୍ ଛାଡ଼ିବା କଥା ହେଲା ?

ଜୟନ୍ତ—ଏଇତ ଦିନ ଆଠ, ବାର କଥା—କେଇଦିନ ହେଲା ? ଜାପାନ ପ୍ରସ୍ତୁତ ହେଇଚି ଅନେକଦିନୁଁ । ମୁହଁ ବାଲିଙ୍ଗିରେ କାମ ଚଳିବ ନାହିଁ ରାମଲିଙ୍ଗମ୍ ! ଇଂଲଣ୍ଡ, ଆମେରିକା ଦି'ଟାଯାକ ବଡ଼ ଶକ୍ତି ବୋଲି ତ କହୁଚେଁ । ଆଠ ତାରିଖରେ ଯୁଦ୍ଧ ଘୋଷଣା କଲା ଜାପାନ୍ । ଆଜି ଡ଼ିସେମ୍ବର ସତେଇଶି । ପଚିଶ ତାରିଖଦିନ ଦେଲା ଅଜାଡ଼ି ବୋମା—ରେଙ୍ଗୁନ୍ ହୁଲ୍‌ସ୍ଥୁଲ୍ ।

ରାମ—୧୯୪୧ତ ସରିଲା ବୋଲି । ଗତି ଯେମିତି ଦିଶୁଚି ୧୯୪୭ ଜାନୁଆରୀ ବେଳକୁ କଏଥିବ—କଏ ନଥିବ ।

ଜୟନ୍ତ—କେତେ ଓଡ଼ିଆ ରେଙ୍ଗୁନରେ ! ଦିନ ଦି'ଟାରେ ଅଧେ ସଫା ।

ରାମ—ଓଡ଼ିଆତକ ଏଠି ଆସି ଧନ ଦୌଲତ, ଅଧିକାର ସବୁ କରି ସାରିଥିଲେ । ଗଲାସିନା—

ଜୟନ୍ତ—ସେଇଟା ଓଡ଼ିଶାର ଦୁର୍ଭାଗ୍ୟ । ଉପାୟ ତ ନାହିଁ କିଛି, ଧନ ଜଗି ବସିଥିଲେ ଜୀବନ ଯିବ, ଧନ ବି ଯିବ । ତାଠୁଁ ବରଂ—

ରାମ—ଆଗରୁ ବାଟ କାଟିବା ଭଲ । ଇସ୍, ଯା ହୋଇ ଗୋଡ଼ମାଟିପରି ଠଙ୍କା ଫିଙ୍ଗା ଚାଲିଚି—

ଜୟନ୍ତ—ଛାଡ଼, ବାହାରି ପଡ଼ । ରେଙ୍ଗୁନ ଛାଡ଼ିବାକୁ ତ ହବ । ଆଉ ଯଥା ସମ୍ଭବ ଶୀଘ୍ର ।

ରାମ—କଅଣ ନେବା ସାଙ୍ଗରେ ?

ଜୟନ୍ତ—ଯାହା ଯେତିକି ସାଇକେଲ୍ ପଛରେ ଯାଇପାରିବ । ବେଶୀ କିଛି ନବାର ତ ଉପାୟ ନାହିଁ । ଆଉ, ନେଲେ ଜୀବନର ଆଶା ନାହିଁ ।

ରାମ—ହଁ, ଏଇତ ବେଳ । ବାଟରେ ଯେ କି ବିପଦ ଘଟିବ । ଚୋର, ଖଣ୍ଟ, ଡ଼ାକୁ—

ଜୟନ୍ତ—ତୁମେ ଠିକ୍ ଠାକ୍ ଅଛ ତ ?

ରାମ—କହିଲେଇ ବାହାରିଲା—ମୁଁ ଏଇ ଯେମିତି ଅଛି । ଖାଲି ମାୟା ଲାଗୁଚି କାଠର ଗୁରାଏ ଭଲ ଭଲ ଜିନଷ ମୁଁ କରିଥିଲି ।

ଜୟନ୍ତ—ବେଶ୍ । ଥରେ ଶେଷଥର ପାଇଁ ଆଖି ପକେଇ ହ'ଟୋପାଲୁହ ଗଡ଼େଇ ବିଦାୟ ମାଗିଆସ ।

ରାମ—କୋଉଠିକି ଯିବାର ଠିକ୍ କରୁଚ ?

ଜୟନ୍ତ—ଏକାବେଳେ ପ୍ରୋମ୍ ।

ରାମ—ଏଠିକି ଦୂରଭି ?

ଜୟନ୍ତ—ଶୁଣିଛି ଉତ୍ତରକୁ ପ୍ରାୟ ଦୁଇଶହ ମାଇଲ ।

ରାମ—ଦୁଇଶ ମାଇଲ ! ଯିବା କେମିତି ?

ଜୟନ୍ତ—ସାଇକେଲ । ଆତ୍ମରକ୍ଷାର ସାଥି ପିସ୍ତଲ । ମୁଖେରାମ—ପଦେ ଧ୍ୟାନ । ତା'ଛଡ଼ା ଆଉ କ'ଣ ? କେତେବେଳେ ଯେ କଅଣ ଘଟିବ ଠିକ୍ ତ ନାଇଁ । ମୁଁ ହେଲେ ଅଭଅଡ଼ା—ତୁମର ତ ଗାଆଁ ର ମାୟା ଅଛି ।

ରାମ—ମାୟା କଅଣ ଆଉ ତମର ନାଇଁ ?

ଜୟନ୍ତ—ଅଛି ହଁ, ବାକି ତମର ସେ ମାୟା ଭିତରେ କାୟା ଅଛି—ଆଉ ତାର ଛାୟା ହୁଏତ ତମକୁ······

ରାମ—( ଘରକଥା ମନେପଡ଼ି କାନ୍ଦି ଉଠିଲା—ଜୟନ୍ତର ହାତ ଧରି ) ଜୟନ୍ତ ବାବୁ !

ଜୟନ୍ତ—( ହସି ) ଆରେ ଆରେ ! ତୁମେ ଏତେ ଦୁର୍ବଳ ? ହଜାର ହଜାର ଓଡ଼ିଆ ଏଠି ଅଛନ୍ତି । ଅନେକଙ୍କର ତମରି ଅବସ୍ଥା—ଭାବିଲେ କଅଣ ହବ ? ପେଟ ତ ଏତେ ଦୂରକୁ ଆଣିଚି । ଚାଲ, ଜୀବନଟା ଆଗେ ରହୁ । ଭାଙ୍ଗି ପଡ଼ିବା ବେଳ ବର୍ତ୍ତମାନ ନୁହେ । ବାଟରେ ବିପଦର ସୀମାନାହିଁ । ବର୍ମୀଙ୍କ ଆଖିରେ ଆମେ ସବୁ ଯେ "କାଲା" ଏକଥା ମନେ ଅଛି ତ ?

ରାମ—ନାଃ, ଭାବ ଆଉ କରୁଛ ଲାଭ ନାହିଁ । ଠିକ୍ କହୁଚ । ଆମକୁ ବଞ୍ଚି ରହିବାକୁ ହେବ ।

ଜୟନ୍ତ—ମୁଁ ଖାଲି କର୍ପୋରେସନରୁ ବାକି ଦରମାଟା ନେଇ ଆସେଁ । ଖାଲି ଯିବ—ଆସିବ । ତୁମେ ପ୍ରସ୍ତୁତ ହୋଇ ଥାଅ । ସାଇକେଲ୍ ଠିକ୍ ଅଛି ତ ?

ରାମ—ହଁ ଠିକ୍ ଅଛି ।

( ଦୂରରୁ 'ପଳା' 'ପଳା' ସ୍ୱର ଶୁଭିଲା )

( ସାଇରନ୍ ବାଜି ଉଠିଲା )

ଜୟନ୍ତ— ଏ୍ୟ କଅଣ ? ଜାପାନୀ ଉଡ଼ାଜାହାଜ ଆସିଲା ନା କଅଣ ?

ରାମ—ଅସମ୍ଭବ ନୁହେଁ—ଚାଲ ଚାଲ ( ଦୁହେଁ ଶୀଘ୍ର ଚାଲିଗଲେ )

---

## —ଚତୁର୍ଥ ଦୃଶ୍ୟ—

( ରେଙ୍ଗୁନ ରାଜପଥ । ଯଦୁଆ ଓ ରଘୁ—ଦୁ'ଜଣ ଓଡ଼ିଆ—ରେଙ୍ଗୁନ୍‌ରେ ବସବାସ କରୁଥିଲେ । ସେମାନେ ଆସିଛନ୍ତି—ଗାଆଁକୁ ଯିବାଲାଗି ତରତର )

ରଘୁ—ନାନୀ ପାଖରେ ମୋର ସତରଟା ଟଙ୍କା ରହିଗଲା ରେ ଯଦୁଆ ।

ଯଦୁ—ଆଉ ସେ ଟଙ୍କା । ଜୀବନ ବଞ୍ଚିଲେ ଘରକୁ କେମିତେ ଯିବା ସେ କଥା ଭାବେଣି ପଡ଼ୁଛି—ବୋଇଲା ଟଙ୍କା ! ଆମ ଚା'ବାଗନା ସାଇବ ଦୁ'ଦିନ ହେଲା କୁଆଡ଼େ ଗଲାଣି । ହସ୍ତାବାର ଆଜ, ଟଙ୍କା ନାଇଁ କି ପଇସା ନାହିଁ । ବେଲି ସରକି ମୁଦିଟାକୁ ବିକି ମୁଁ ଟଙ୍କା ଚାଳିଶିଟି ଧରିଛି । ବାକି ଖରଚ କେତେ ହଉଚି ଜଣାନାଇଁ ।

ରଘୁ—ଆରେ ଜାହାଜ ମିଳିବଟି । ଓଃ, କେତେଗୁଡ଼ରେ ଜନମ ମୁଁ ଜାଣି ନଥିଲି ଟି ! ଆସନ୍ତା ବଇଶାଖରେ ଝିଅକୁ ଉଠେଇଦେବି ବୋଲି ସବୁ ଠିକ୍ ଠିକଣା କରି ବସିଥିଲି । କେମିତି ସାଥିରେ ନେବ ?

ଯଦୁ—ତୋର ଖାଲି ସେଇ ଚନ୍ତା ପଡ଼ିଚ ! ଆଗ ଜୀବନ ରହୁ । ଜନିଷ ନବୁ କୋଉଠିକି ? ଲୁଗା ଗାମୁଛା ଦି'ଖଣ୍ଡ ଧର । ବାଟେତ କଅଣ ହେଇଥିବ—ଜଣାନାଇଁ । ସେଥିରେ ବସୁରୁଛୁ ଗାଆଁକୁ ଜନିଷ ନବ ! ହୁଃ !

( ନବା ଆସି ପହୁଞ୍ଚିଲା )

ନବା—ମୁଁ ତତେ ଖୋଜୁଥିଲି ରେ ଯଦୁଆ ଭାଇ ! ଜାଣୁ ତ ମୁଁ ଟିକିଏ ବାଉଳିଆ ଲୋକ । ଶୁଣୁଚ କଅଣ ଜାହାଜ ଛାଡ଼ୁନାଇଁ । କେମିତେ ଦେଶକୁ ଯିବା କହିଲୁ ? ମୋର ତ ବୁଦ୍ଧି ବଣା ହେଇଗଲାଣି ।

ଯଦୁ—ବାହାର ପଡ଼ । ଆଗେ ରେଙ୍ଗୁନ୍ ଛାଡ଼ । ତା'ପରେ କଥାବାର୍ତ୍ତା ।

ନବା—କଅଣ ସବୁ କହୁଛନ୍ତି ବାଟରେ ଖଣ୍ଟେ ମାଡ଼ିଛନ୍ତି । ଯାହା ଯୋଉଠୁ ପାଉଛନ୍ତି—ମଣିଷକୁ ମାରି ଛଡ଼େଇ ନଉଚନ୍ତି ।

ରଘୁ—ହଇରେ ଯଦୁ !

ଯଦୁ—ଆଉ ହଇରେ ଯଦୁ । ଏଠି ଥିଲେ ବୋମା ମାଡ଼ରେ ମରିବା—ନାଇଁ ଯାଉ ଯାଉ ବାଟରେ ଯାହା କରମରେ ଥିବ । ତୁ ହାତ ଦବୁ ନା ମୁଁ ହାତ ଦେବି ?

ନବା—ମୁଁ ତମ ସାଙ୍ଗରେ ବାହାରିବି ! ଗାଆଁରୁ ବ ପଞ୍ଚାଏ ଯିବାକୁ ତରବର ହେଲେଣି ।

ରଘୁ—ତରବର ହେବାବେଳକୁ ଆଉ ନ ଥିବ । ଲୋକଗୁଡ଼ା କହୁଣୀକି ବୋହି ଯିବ । କିଏ କିଏ ସବୁ ଯିବ—ବାହାର ପଡ଼ ।

ନବା—ଭାତ ବସେଇଥିଲି । ମୁଠେ ମୁଠେ ଧାହାହବ ପକେଇ ଦେଇ ଯାଇଥିବା । ବାଟରେ କୋଉଠି କଅଣ ?

ଯଦୁ—ଯାବେ—ମନ ଯାଇ କୋଉଠି, ଖାଉଚ କିଏ ?

ରଘୁ—ସାଙ୍ଗରୁ ଗ୍ଭଡ଼ିକରି ଯିବା କେମିତି ? ଯାହା ତ ହବ, ହବ । ଏକା ଓଙ୍ଗାରେ ତ ବସିଛେଁ । ରହୁ କ ବୁଢ଼ୁ । ଗ୍ଭଲ ସଭିଙ୍କି ଓକାହକା କରି ଏଇ ଓଳି ବାହାରି ପଡ଼ । 

ଯଦୁ—ଆରେ ଏଇ ଓଳି ନୁହ—ଏଇନେ । ଏଇନେ ବୋଲି କହ ।

( ସମସ୍ତେ ଗ୍ଭଲଗଲେ )

---

## ପଞ୍ଚମ ଦୃଶ୍ୟ

(ପ୍ରୋମ୍ ସହର । ବୃନ୍ଦାବନ ବାବୁଙ୍କ ସଦର ମେଲ୍ । ନାଚ ହଉଚି—ବୃନ୍ଦାବନବାବୁ ନାହାନ୍ତି । ଅନ୍ୟାନ୍ୟ ବନ୍ଧୁବାନ୍ଧବ ତାଙ୍କର ବସି ନାଚ ଦେଖୁଛନ୍ତି । ନାଚ ମଝିରେ ଆସିଲେ ଭାସ୍କରବାବୁ, ହାତରେ ଧରିଛନ୍ତି ଖଣ୍ଡିଏ ଖବର କାଗଜ 'ବର୍ମା ଓଡ଼ିଆ ପତ୍ରିକା' । ସମବେତ ଦର୍ଶକ ମଧରେ ଚହଳ ପଡ଼ିଗଲା । ସମସ୍ତେ ଭାସ୍କରବାବୁଙ୍କ ଆଗମନରେ ବଡ଼ ଆନନ୍ଦ । ଜଣେ ଅଧେ ଉଠି ତାଙ୍କୁ ସ୍ୱାଗତ ଜଣାଇଲେ)

ହୁଷୀ—ମୁଁ ତ ଏଇନେ ଆପଣଙ୍କ କଥା କହୁଥିଲି ।

ରଘୁ—ହୁରୁଷୀବାବୁଙ୍କୁ ଠିକ୍ ମୁଁ ପଗ୍ଭରୁଚି ଭାସ୍କର ବାବୁଙ୍କର ଉଛୁର କାହିଁକି—ମୁହିଁକଥା ମୁହିଁରେ ଅଛି, ଭାସ୍କରଙ୍କର ଉଦୟ ।

ଭାସ୍କର—ଆଉ ରାତିରେ ଉଦୟ ! କୋଉଠି ଯାଇ ଏଇନେ ଆମେରିକାରେ ଦିନ ହେଉଥିବ ନା । ଆମ ଏଠି ତ ଅନ୍ଧାର ରାତି । (ଘଣ୍ଟା ଦେଖି) ରାତି ଦଶ । ବୃନ୍ଦାବନ କାହିଁ ?

ଯାଦବ—ଭିତରେ ବସ—ଆସିବେ ନାହିଁ ବଳେ । ନାଚ ଦେଖ ବସି ।

(ବୃନ୍ଦାବନ ବାବୁ ପ୍ରବେଶ କଲେ)

ବୃନ୍ଦାବନ—ଆରେ, ମୁଁ ତତେ ଖୋଜିବାକୁ ଆସୁଥିଲି । ଏତେ ଡେରି କଲୁ ?

ଭାସ୍କର—କାମ ସାରିଲେ ତ ! ଖାଇବାକୁ ହେଲାଣି କି ନାହିଁ କହିଲୁ ? ଭୋକ ହେଲାଣି ଭାରି ।

ବୃନ୍ଦାବନ—ସବୁ ହୋଇଗଲାଣି । ନାଚ ବନ୍ଦ ଥାଉ ।

(ବସିଲେ—ନାଚ ବନ୍ଦ ହେଲା)

ଭାସ୍କର—ଆଉ ବସିଲୁ କାହିଁକି ?

ବୃନ୍ଦାବନ—ମଲା ! ବସ, ଯାଗାହଉ, କଅଣ ଠିଆ ଠିଆ ଖାଇବୁ ? ଟିକିଏ ଆଉ ଡେରି ଅଛି ।

ଭାସ୍କର—(ବସିଲେ)

ନାଚବାଲା—ଆମେ ସବୁ ତେବେ—

ବୃନ୍ଦାବନ—ଉହୁଁ, ନ ଖାଇକରି ଯିବ ?

ରଘୁ—ଯିବାକଥା କହୁଚ କଅଣ ?

ବୃନ୍ଦାବନ—ବସ, ବସ ।

ଭାସ୍କର—ଆଚ୍ଛା ବୃନ୍ଦାବନ, ଏଇଟା ତୋର କୋଉ ଭୋଜି ?

ବୃନ୍ଦାବନ—(ହସି) କୋଉ ଭୋଜି ?

ଭାସ୍କର—ହଁ, ମୁଁ ପଚାରୁଚି—ନମ୍ବର ।

ବୃନ୍ଦାବନ—ଏଇ ଆରମ୍ଭ—ଏଇ ଶେଷ । ବାହାଘରଟା ତ ଜମୀର ଆଉ ଏଠି ହବନାହିଁ, ହବ ଗାଆଁରେ । ସେଠିକି ଯେ ଯିବ—ସେ ଖାଇବ । ଖୋଇଲା ପୂଅର ଜାଗା ନାହିଁ ।

ଭାସ୍କର—ତା'ତ ଜାଣୁଁ । ଏଠି—ମାନେ ପୋଲିସ୍ କୁନ ଅନ୍ତର୍ଗତ ଏଇ ପ୍ରୋମ୍ ସହରରେ ଏଇ ଭୋଜିଟା କେଉଁ ଦାବିରେ କୁ ?

ବୃନ୍ଦାବନ—ତତେ କଅଣ ଜଣାନାହିଁ ?

ଭାସ୍କର—ତଥାପି—

ବୃନ୍ଦାବନ—ଝିଅର ମହାପ୍ରସାଦ ଠେକା ।

ଭାସ୍କର—ଆଚ୍ଛା ହେଲା । ବାବତ୍ ଏକ—ତା'ପରେ ?

ରଘୁ—ତା'ପରେ ଗାଆଁରେ ବୃନ୍ଦାବନ ପରିଜାଙ୍କ ଘରକୁ ଗଲେ ବାହାଘର ଭୋଜି ।

ଭାସ୍କର—ସେ ତ ଦୂର କଥା—ଏଇଠି ଆଉ ଗୋଟେ ଭୋଜି ଫାବୁଚି ଦେଖ (ଖବର କାଗଜ ଦେଖେଇଲେ)

ବୃନ୍ଦାବନ—କଅଣ ସେଇଟା ଦେଖେଁ, କ କାଗଜ ?

ଭାସ୍କର—କମ୍ପ୍ଲା ଓଡ଼ିଆ ପତ୍ରିକା । ଉର୍ମୀ ପାଶ୍ କରିଛୁ । ହେଇଟି (କାଗଜ ରଘୁ ଆଗରୁ ଆଣି ବୃନ୍ଦାବନ ବାବୁଙ୍କୁ ଦେଖାଇଲେ) ଉର୍ମିଳା ପରିଜା ! କଅଣ, ଏଥର ପୁଣି ଦେବାର ଠିକ୍ ତ ?

ବୃନ୍ଦାବନ—କାଗଜ ଲେଉଟାଉ ଲେଉଟାଉ) ଏଥିରେ ମୋର କଣ ଅଛି ? ଯେ ପଢ଼ିଲା, ସେ ପାଶ୍ କଲା । ତାର ସିନା ବାହାଦୁରୀ—ଭୋଜି ଦେବା ନଦେବା କଥା ସେ ଜାଣେ ।

(ଉର୍ମୀ ଆସିଛୁ ଭିତରୁ ପାନ ନେଇ)

ଭାସ୍କର—(ବୃନ୍ଦାବନ ବାବୁଙ୍କୁ ବନ୍ଦକରି) ହଉ, ହଉ; ଭଲ କଥା—ତୁ ତୁନି ହ ବୃନ୍ଦାବନ ! ଆଲୋ ମାଆ, ଶୁଣ୍ ଶୁଣ୍ । ତତେ ଗୋଟେ ଖୁସି ଖବର ଦେଲେ ଖାଇବାକୁ ଦବୁନା ?

ଉର୍ମୀ—(ହସି) କଅଣ, କୁହନ୍ତୁ ।

ହୃଷୀ—(ବୃନ୍ଦାବନଙ୍କ ହାତରୁ କାଗଜ ଟାଣି, ଉର୍ମୀକୁ ଦେଇ) ହେଇଟି, କାଗଜ ଦେଖିଲେ ଜାଣିପାରିବୁ ଯେ ।

ଉର୍ମୀ—ଓ, (ହସି) ହଁ ।

ବୃନ୍ଦାବନ—କଅଣ ? ଖାଇବାକୁ ଦବା କଥା ହେଲାତ ?

ଉର୍ମୀ—ବାପା କହିବେ ନା ।

ରଘୁ—ବାପା ପରା ତୋ ଉପରେ ଛାଡ଼ି ଦେଉଛନ୍ତି । କହିଲେ, ଯେ ପାଶ୍ କରିଛି, ତା ଖବର ସେ ବୁଝିବ । ତାଙ୍କର ସେଥିରେ କିଛି ଯାଏ ଆସେ ନାହିଁ ।

ଊର୍ମୀ—ସେ ଯାହା କହିବେ ସେଇଆ ହେବ । (କାଗଜଟା ବୃନ୍ଦାବନ ବାବୁଙ୍କ ହାତକୁ ବଢ଼ାଇଦେଇ ଚାଲିଗଲା)

ଭାସ୍କର—ବେଶ୍ ଯା, ହଉ, ବାପ ଝିଅକୁ କହୁଛି, ଝିଅ ବାପ ଉପରକୁ ପକଉଚ ! ମଝିରେ ଆମେ ଖାଲି ସିନା—

(ଶଙ୍ଖଧ୍ୱନି ଶୁଭିଲା)

ସମସ୍ତେ—(ହସି ଉଠିଲେ)

ବୃନ୍ଦାବନ—ଠିକ୍ ଜବାବ ମିଳିଲା—ଶଙ୍ଖ ଫୁଙ୍କ । ଆରେ ଆଚ୍ଛା କଥା—ପଇସା ଖର୍ଚ୍ଚ ହେଲା ମୋର, ପରିଶ୍ରମ କରି ପାଠ ପଢ଼ିଲା ଝିଅ ! ପାଶ୍ କଲାବେଳକୁ କଅଣ ନାଁ—ଭୋଜି ଦିଅ !

(କାଗଜ ଓଲଟାଉଥିଲେ)

ହର୍ଷା—ସେ'ତ ଯାହା ହେଲା—ହେଲା । ଜବାବ ମାଗିଲା ବେଳକୁ ଶଙ୍ଖଟାଏ କିଏ ଫୁଙ୍କିଲା କହନା ?

ବୃନ୍ଦାବନ—ବରଘର ସ୍ୱୀକାର ସମ୍ମତି ଆସିଗଲାଣି । ସେଇ ହୋଇଥିବ । (କାଗଜକୁ ପଢ଼ୁଥିଲେ, ଆଖି ବଡ଼ ବଡ଼ କରି କହିଲେ) ସର୍ବନାଶ, ଏଯେ କଅଣ ଖବର ? କାଗଜଟା ପଢ଼ି ନାହୁଁ ବୋଧେ ଭାସ୍କର ।

ଭାସ୍କର—ନାଁ (କାଗଜକୁ ଚାହିଁ) କଅଣ ?

ବୃନ୍ଦାବନ—ରେଙ୍ଗୁନରେ ଉଡ଼ାଜାହାଜ ଆକ୍ରମଣ । ସହର ଜନଶୂନ୍ୟ । ଏ କି ଖବର ହୋ ? ଆରେ ସ୍ଥାନେ ସ୍ଥାନେ ଗୁଣ୍ଡାମାନଙ୍କର ଅତ୍ୟାଚାର !

ଯାଦବ—ଆରେ ! ଉଡ଼ାଜାହାଜ ଆକ୍ରମଣ ! ଦେଖେଁ ଦେଖେଁ ।

ବୃନ୍ଦାବନ—ଦେଖିବାକୁ ଆଉ କଅଣ ଅଛି ? ରେଙ୍ଗୁନ ଗଲା—କାଲି ପ୍ରୋମ୍ ଉପରେ ବୋମା ଅଜାଡ଼ି ହୋଇ ପଡ଼ିବ ନାହିଁ ବୋଲି କିଏ କହିବ ? ଦେଖେଁ—ଅଫିସରେ ଟେଲିଗ୍ରାମ କରେଁ । ଛୁଟିଟା ଯଦି ମିଳିଯାଏ—

ଭାସ୍କର—କଅଣ ସମ୍ମାନ ସହକାରେ ପୃଷ୍ଠଭଙ୍ଗ ଦବା, ନା କଅଣ ହେ ?

ବୃନ୍ଦାବନ—ଯାଃ, ମନଟା ତ ଖରାପ ହୋଇଗଲା । କଥାର ରସିକତା ବୁଝିବାକୁ ଡର କାହିଁ ? ହଉ, ବାଅ ଚାଲ—ଠାଆ ହେଲାଣି ତେଣେ ।

(ସମସ୍ତେ ଉଠିଲେ)

ଯାଦବ—(ବିଚ୍ଛଣାପତ୍ର ଆଡ଼କୁ ଲକ୍ଷ୍ୟ କରି) ଏଗୁଡ଼ାକ ପଡ଼ାରେ ରହିଲା ଯେ ! ଗୈର, ବଦ୍‌ମାସ୍ ତ କମ୍ ନାହାନ୍ତି ।

ବୃନ୍ଦାବନ—ତମେମାନେ ଚାଲ । ସଞ୍ଜିବ ଆସି ଉଠେଇ ନବ ଯେ ।

(ସମସ୍ତେ ଚାଲିଗଲେ—ପିଛା ପଛେ ପଛେ ଆସିଲେ କଳାମୁଖା ପିନ୍ଧିଥିବା ପାଞ୍ଚଜଣ ଗୁଣ୍ଡା । ହାତରେ ତାଙ୍କର ଛୁରୀ ଓ ପିସ୍ତଲ । ଘର ଭିତରକୁ ପଶିଯିବାକୁ ବସିଥିଲେ । ଏତିକବେଳେ ଘରୁ ଶୁଭିଲା ବହୁ ଲୋକଙ୍କ କଣ୍ଠ-ହସ-ଚୋଳମାଳ । କବାଟ ପାଖେ ଦୁଇଜଣ କାନେଇଲେ । ଦୁଇଜଣ ଇସାରାରେ ଘରେ ପଶି ଲୁଟିବାର ଜଣାଇଲେ । ଆଉଜଣେ ଲାଇଟ୍ ସୁଇଚ୍ ଖୋଜି ଲିଭାଇ ଦେଲା )

ଭିତରୁ ଶୁଭିଲା—ଆରେ ଆରେ, ଆଲୁଅଟା କିଏ ଲିଭାଇଦେଲା ? Light, Light ।

ଘଣ୍ଟା ବାଜିଲା (ବିଗୁଲ୍ ଫୁଙ୍କ)

———

# ଜଙ୍ଗଲ ଡୋଖା

( ଆମ୍ବ ତୋଟା—ସୂର୍ଯ୍ୟାସ୍ତ )

(ଘୋର ପବନ, ମେଘ ଗର୍ଜ୍ଜନ । ଦୂରରୁ ଗାଈ ବେକର ଟିପା ବାଜୁଥିବା ଶବ୍ଦ ଶୁଣା ଯାଉଥାଏ ।)

( ରମୀ ଆମ୍ବ ଗୋଟାଇ ବୋଝରେ ରଖୁଥିଲା )

ରମୀ—ହଇଲେ ହଇଲେ—ଏ ସୁମୀ ! ପୋଡ଼ାମୁହଁକ ଏଇ ଭଳି ସଞ୍ଜରେ ମରଣ ଡାକୁଛୁ କଲେ ! ସୁମୀ ! ଏ ସୁମୀ !

ସୁମୀ—(ନେପଥ୍ୟରୁ) କଏ ସେ—ରମୀନାମା କଲେ ? ଆ ଆ, ଆଲୋ—ବୋଝେ ଆମ୍ବ ଗୋଟେଇଚ ଲୋ । ମୁଁ ଆଉ ଟେକି ପାରୁନାଇଁ । ପବନରେ ଦୁଲ୍‌ଦାଲ୍ ହୋଇ ଝଡ଼ି ପଡ଼ୁଛି, ଗୋଟେଇବାକୁ ତର ନାଇଁ ।

( ରମୀ ପ୍ରବେଶ )

ରମୀ—ପୋଡ଼ଯାଉ ତୋ ଆମ୍ବ ଗୋଟେଇବା ସଉଁଗ । ଆ ବାହାର ବେଗେ । ଶୁଣୁନୁ କି ? ଲଣ୍ଡାର ଜଣଙ୍କୁ ଆନେଇଲୁ-କଳାହାଣ୍ଡି ଆ ଘୋଟେଇ ଆସୁନ । ପବନ ବୋଲୁନ ମୁଁ—ଘଡ଼ଘଡ଼ି ବୋଲୁଚ ମୁଁ । ବେଳବୁଡ଼ ହେଲାଣି । ଗାଆଁ ଗୋଠ ବାହୁଡ଼ିଲେଣି । ଚେଇଁକି ଏଇ ଗଛମୂଳେ ପାଚଳା ଆମ୍ବ ଘୋଟେଇ ମରୁଚୁ ? ଯମର ଅହ୍ନଗ୍ଠ ଛଡ଼େଇବୁ କଲେ ? ଜାଣିନୁ ନା—ଏଠେଇ ଯୋଡ଼ା ଯୋଡ଼ା ସାହା ବୁଲୁଚ !

ସୁମୀ—କ ସାହା ଲେ ?

ରମୀ—ମଲା, ଗେଲି ଆଉ ବୁଲି । ଆଗପଛ ହୋଇ ଦ'ଦଣ୍ଟା ପର ଏଇ ଗଛ ମୂଳ କଜଳ ଡ଼ୋଭରେ ଯାଇଛନ୍ତି ।

ସୁମୀ—ଆଲୋ କୋଉ ଗେଲି ବୁଲି ମ ?

ରମୀ—ଆଗେ ଆମ୍ବତକ ବୋଝରେ ପୂର । କୁନ୍ଦଅାଁ ଉପରକୁ ଗ୍ଳଲ । ସେଇଠି ବସିବା—ଆମ୍ବ ଖାଇବା, କଥା ଶୁଣିବୁ ।

ସୁମୀ—ଦେ, ତେବେ ବୋଝଟା ଠିକ୍ଏ ମୁଣ୍ଡକୁ ଟେକ ଦେ ।

ରମୀ—ମଲା, ଦୁହେଁ ଦ'ପଟ ଧରାଧରି କରି ଧରି ନବା ନାଇଁ ଯେ—ମୁଣ୍ଡକୁ ଟେକୁଚ ? ଧର, ଗ୍ଳଲ । ଓଃ, କେଡ଼େ ଭରି ଲୋ !

(ବୋଝ ଟେକଲା)

ମଲି ଲୋ ଗ୍ଭେପଶ ! ବୋଝଟା ଧରି କେତେ ହସୁଚୁ ଲୋ ! ନାଇଁ ନାଇଁ ହାତରୁ ଖସିଗଲେ ଆମ୍ବତକ ଡୋଭରେ ପଡ଼ିଯିବଟି ।

(ଦୁହେଁ ବୋଝ ଦପଟୁ ଧରି ଉଠାଇଲେ)

ସୁମୀ—( ହସି ହସି ) ହୁଁ, ମୋ ଭଇ ରେ—ଖାଲି ପଡ଼ିଲାରେ—ଟିପ ପଡ଼ିଲାରେ—ଥିଇରି ଗ୍ଳଲରେ । (ଦୁହେଁ ବୋଝ ଧରି ଗ୍ଳଲେ)

ରମୀ—ଶୁନ ହ'ମ । ଶାଶୁଘରକୁ ଯାଉଚୁ କଲେ ? ସବୁଶି ତାକ ମନେ ପଡ଼ୁଛି ?

ସୁମୀ—(ଘାର୍ଘ ନିଃଶ୍ୱାସ ମାରି) ଓହୋ !! ସତେ ଲୋ ରମୀନାମି ! ପଥର ବୋଝପରି ହେଇଚ । ବ, ଏଥର କହ କୋଉ ସାହା—କାହା ସାହା ।

ରମୀ—ଆମ ଗାଁ ସାଉଘର ସାଧୁଆ ଭଇକ ଜାଣିଚୁଟି ?

ସୁମୀ—ମଲା, ମୁଁ କଅଣ ବରଣା ଗାଁର କଲେ ? ସାଧୁଆଇକ ଜାଣିବି ନାଇଁ ? କ କଥା କହୁଚୁ ମ ?

ରମୀ—ହଁ ହଁ, ସେଇ ସାଧୁଆ ଭଇ—ଦୋଅଡ଼ବାହ୍ମୀ, ଆଗ ଭରିଜା ମଁ। ଗେଲି । ଆଉ ଏଇ ଯୋଡ଼ା ଆମ୍ବମୂଳେ ବୁଲିର ଘର ଥିଲା । ଘର ତ ନୂଆ—ପଲା କୁଡ଼ିଆ ବୋଲି ।

ସୁମୀ—ସତେ ?

ରମୀ—ହଁ, ତେବେ ଏମିତି କେତେ ହେଲା କ ? ତେର ପୂର ଚଉଦରେ ତ ଗୋଡ଼ ଦେଇଥିବୁ । ବୁଲା ମଲାବେଳକୁ ମତେ ନାଗ ପାଠ ସାତବରଷ ହବ । ଏଇ ଯୋଡ଼ା ଆମ୍ବଗଛ ତଳେ ରହୁ ଥାଆନ୍ତି ବୁଲା ଆଉ ତା ମାଆ । ବୁଲାମାଆ ଯୁ। ତା ଘରେ ଦୁଃଖ ଧନ୍ଦା କରି ପେଟ ପୋଷେ । ବୁଲା ହେଇଥାଏ ଖଣ୍ଡୀଘରର ଖଣ୍ଡୀ ଝିଅ । ଯେମିତି ଅଣ୍ଡି ଖିଚଣ୍ଡୀ ସେମିତି ଖଳଖା । ନଈ ପହଁରା କଅଣ, ଗଛ ଚଢ଼ା କଅଣ—ସବୁ ଖବ୍ୟାରେ ବୁଲାର ପାଶ୍ ।

ସୁମୀ—ହଁ, ସେଇଠୁ ?

ରମୀ—ସାଧୁଆ ଭାଇ ତ ସାଉଘର ଗେଲବସର ପୁଅ । ଏକଇର ବଳା ଖଣିକେଶନ । ପୁଣି ଘରେ ତାର ସାବତ ମାଆ । ମହତଙ୍କୁ ଡରି କୋଉ କଥାରେ ଉଁ, ଚୁଁ କହନ୍ତି ନାଇଁ ବୁଲମା ତାଙ୍କ ଘରେ ଯାଇ ପାଇଟି କରେ । ସାଧୁଆ ଭାଇ ପିଲାକୁ—ବୁଲ ତ ପିଲା । କାହାରି ନଗା ନାଇଁକି ପଗା ନାଇଁ । ସେଇ ଖନରୁ ଖହେଁ ଧୂଳି ଘରର ଖେଳସାଥୀ । ଖନ ତ ବସି ନାଇଁ । ବୁଲା ଏକେ ଦେଖିବାକୁ ସୁନ୍ଦର । ତେଇଁରେ ବଅସ ନାଗିବାରୁ ଆଉରି ଉଜଳ ଡାଉଲ ଖଣିଲା । ସାଧୁଆ ଭାଇ ସେତେବେଳକୁ ଛଇଗୁଡ଼ଆ ନୂଆ ଟେଣ୍ଡିଆ । ବଅସ ଯେତିକ ଯେତିକ ବଢ଼ୁଥାଏ ତାଙ୍କ ସାଙ୍ଗସାଥୀ ଡୋରି ସେତିକ ଟାଣ ହଉଥାଏ ।

ସୁମୀ—ସାଉଘର ତ ଥେଲାବାଲା । ବୁଲା ପତର ସାଉଁଟି ଘର ପିଲା । ସେଥିରେ ଆଉ ସାଙ୍ଗ କେମିତି ମ ?

ରମୀ—ଆଲୋ ଉଲ୍ଲୀ ! ସାଙ୍ଗସାଥୀ କଅଣ ଧନ ଦରବକୁ ଚକଉଥାଏ ? ସେ ପରା ମନର ସଉଦା ଲୋ !

ସୁମୀ—ହଁ ହଁ—ଯାହା କହିଲୁ ।

ଋମୀ—ଥରେ ରଜ ହେଉଥାଏ । ବରଷା ପାଗ । ଝିପି ଝିପି ପାଣି ବରଷୁଥାଏ । ଏଇ ଯୋଡ଼ା ଆମ୍ବ ଗଛର ଦ'ଟା ଡାଳରେ ଗୁମୁଁଆଁ କର ଦ'ଟା ଦୋଳି ବାନ୍ଧଥାଏ ବୁଲ୍ । ପହିଲି ରଜ ଦିନ କଅଣ ହେଲ ନା—ଦୁଶିଯାଉଛିଲେ ଆଖି ଆଗରେ—

---

( ଦୁଇ )

( ଦୃଶ୍ୟ ପରିବର୍ତ୍ତନ—ଦୁଇ ଆମ୍ବ ଗଛରେ ଦୋଳି ମୁହାଁମୁହିଁ ବନ୍ଧା ହୋଇଛି । ବୁଲୀ ସାଧୁକୁ ଦୋଳାଉଛି)

( ବୁଲୀର ହସ ଶୁଭୁଛି )

ସାଧୁ—ଆଲେ, ପଡ଼ିଯିବଟି । ପଡ଼ିଯିବଟି, ଛିଣ୍ଡିଯିବ କାଳେ ଦଉଡ଼ି । ଏଡ଼କ ଯୋରରେ ତେହିଁକ ଦୋଳି ପହଁଞ୍ଚାଉଛୁ ? ଏଇ ବୁଲୀ !

ବୁଲୀ—ହୁଁ, ତେମେ ତ ଏକୁଟିଆ ସିଆଣିଆ ପଡ଼ିଚ । ମୁଁ ତ ଦୋଳି ! ବାନ୍ଧିଥିଲି, ତେମେ କଆଁ ଏକୁଟିଆ ଆସି ଖେଳି ବସିଲ ? ଡାକିଲ ନାଇଁ ମତେ ?

ସାଧୁ—ଆଲେ, ତୋ ଭଲକୁ ଡାକିଲି ନାହିଁ ସିନା ! ତୁ ବୁଝୁଚୁ ଓଲଟା । ମୁଁ ଭାବିଲି କି କାଳେ ଯେବେ ମାଉସୀ ଥିବ, ଦେଖିବ, ଗାଳି ଖାଇବୁ ତୁ । ତୁଛାକୁ ତ ଘରେ ବାହାରେ ଝିପି ଝିପି ଝାପର, ଭୁଟୁରୁ ଘଟର ।

ବୁଲୀ—ଓହୋ ? ଏଇଥି ପାଇଁ ! ମଲି । ଡରୁ ଯେବେ କରୁ କାହିଁକି—କରୁ ଯେବେ ଡରୁ କାହିଁକି ? ଗାଳି ଖାଇବ ମୁଁ ? କିଏ ମତେ ଗାଳି-ଦବ ? କାହା ଜିଭରେ ହାଡ଼ ଅଛି ମ ? ମୁଁ କଅଣ ଆଉ କାହା ସଙ୍ଗେ ଖେଳୁଛି କି ? ମଲି—ଭାଙ୍ଗ ମରିଚ ପାଣି—ରଜା ପାଇଛି ଜାଣି । ଆଜ ନ ହେଲେ ତ କାଲି—ଏଇ ଗାଆଁରେ ଶଙ୍ଖ ହୁଳହୁଳି ପଡ଼ିବ ।


Digitised by srujanika@gmail.com

ବୁଲୀ ବୋଉ—(ନେପଥ୍ୟରୁ) ବୁଲୀ ! ଏ ବୁଲୀ । ଆଲୋ ଏ ବୁଲୀ ।

ସାଧୁ—ଚୁପ ହ, ମ । ଶୁଭୁନାହିଁ ମାଉସୀ ଡାକଲାଣି ?

ବୁଲୀ—ଡାକୁଥାଉ । ସବୁବେଳେ ମୋର କିଏ ଏମିତି ଜଗି ବସିଥିବ ମ ? ମୁଁ ଗୁହାଳ ଖୁଣ୍ଟର ଗାଈ ନା କଅଣ ?

ବୁଲୀ ବୋଉ—(ନେପଥ୍ୟରୁ) ଏ ପୋଡ଼ାମୁହାଁ ! ଦେଖୁଚ ତା' କଥାକୁ ? ବୁଲୀ ବାପେଳକ ପାରିଲ ନାହିଁ ପରା ! କହିଲି ଘରେ ଟିକିଏ ଥା —ମୁଁ କଜଳ ତୋଭାରୁ ପାଣି ଦି'ମାଠିଆ ନେଇ ଆସୁଚି । ଏତେବେଳେ ଦୁଆର ଉଦୁଆଁ କରି ଉଆଁ ମାରି ଦେଲାଣି । ଦୋଳ ଖେଳରେ ନାଗି ଯିବଣି ତ ! ଧନ୍ୟ ଲୋ ନାଆଁ ଗାଆଁ ପକେଇ ଟୋକୀ । ବଅସ କଅଣ ତାକୁ ଜଣା ପଡ଼ୁଚି ? ଏଇଠା ନାଗି ପରା ମୁଁ ସୁ ରୁଖୁ ରୁରେ ମରି ପାରିବ ନାହିଁ ! ଏ ବୁଲୀ ! ଆଲୋ ଆଉରୁ ? ଯେତେ ମନା କଲେ ହିଟୁଣୁ ଧାଇଁଲା ସେ ତୋଠାକୁ । ଏଡ଼ିକ ବେଲଜା ଟୋକୀ ତୁ । ତୋ'ନାଗି ବାଟ ଚଲି ହବ ନାହିଁ, ଆଲୋ ବୁଡ଼ି ମରୁନଉଁ ସେ କଜଳ ତୋଭାରେ ?

ସାଧୁ -ଦେଖିଲୁ ? ମୁଁ କହୁଚି ପରା ! ଯା ? ଭାରି ବେଗେ ।

ବୁଲୀବୋଉ—ବୁଲୀ, ଏ ବୁଲୀ । ଆସୁଚୁ ବେଗେ ନାଁ ଦେଖିବୁ ଫେର୍ (ନେପଥ୍ୟରୁ) ଏଇନେ । ଆ, ଆଜ—ତୋର ହିନେକୁ ମୋର ହିନେ । ପୋଡ଼ାମୁହାଁ !

ସାଧୁ—ଯାଉନାହିଁ ବେଗେ । କହିବୁ ତୋଠାରୁ ପଡରେ ସାଉଁଟୁଥିଲି । ଗଦା କରି ଦେଇ ଆସିଚି ।

ବୁଲୀ—ହିଁ ମ । ଡାକୁଥାଉ । ଚଣ୍ଡି ଫାଟୁ, ମରୁ । ସବୁବେଳେ କଟ କଟ ହଉଚି ! କାହିଁକି ମ ? କାହା ମନ ଉପରେ କଅଣ କିଏ ରଜା ? ମୋ ମନ, ମୋ ଖୁସି । ମୁଁ ଖେଳିବି, ମୁଁ ବୁଲିବି, ଆଉ ତ କାହା ସାଙ୍ଗେ ନୁହ—

ବୁଲ୍ଲିବୋଉ—(ନେପଥ୍ୟରୁ) ଏ ବୁଲ୍ଲି !
ସାଧୁ—ହେଇଟି ଫେର୍, ଡାକଲାଣି । ଯା—
ବୁଲ୍ଲି—ସବୁବେଳେ ତମର ଖାଲି ଯା ଯା ଯା । ମୁଁ ସିନା ମାଇକିନିଆ ଝିଅ—ତମେ ତ ମରଦ ପୁଅ । ତମର କାହିଁକି ଏତେ ଡର ଯେ ? ସଫା ସଫା କଥା ସାର କରି ଦଉନା । ମଉସାଙ୍କୁ ଫିଟେଇ କହିଦିଅ । କେତେ ଦିନ ଆଉ ଏମିତି ଲୁଚ୍ଚେଇବରେ—
ସାଧୁ—ହଁ ମ, କାଳି କଅଣ ବଳେଇ ଯାଉଚି ? ବଳେ କଥା ପଡ଼ିବ ନାହିଁ । ତୁ ଯା, ମୁଁ ତୋ ପାଇଁ ପତର ସାଉଁଟି ଗଦା କରି ଦଉଚି ।
ବୁଲ୍ଲି—ସାଧୁ ଭାଇ । ଋଷିକି ଘର ବୁହାଇବି ମୁଁ ? ତୁମେ ପୁଣି ପତର ସାଉଁଟିବ—ମୋ ଘର ପାଇଁ ? ଛି ଛି—ତମ ହାତ ଧରୁଚି···
ବୁଲ୍ଲିବୋଉ (ନେପଥ୍ୟରୁ)—ପୋଡ଼ିଯାଉ ଲୋ ତୋ କାନ ।
ସାଧୁ—ଯା ବେଗେ । କାଳେ ଯୁଦ୍ଧେ ମାଡ଼ି ଆସିବ କି କଅଣ ? ତା'ର ଯୋଉ ତୁଣ୍ଡ ! ହଟା କରିବ ଯେ । ଯା, ମା ପାଇକି ଗଲେ ମୁଁ ପୁଣି ଆସିବି ।
ବୁଲ୍ଲି—ମୋ ରାଣଟି ପାତଥର । ନିଶ୍ଚେ ଆସିବଟି ?
ସାଧୁ—ହଁ ମ । କାହିଁକି ରାଣ ପକାଉଚୁ ? ଦେଖିବୁ ନାହିଁ, ଯା ।

(ବୁଲ୍ଲି ଗୁହାଁ ଗୁହାଁ ଚାଲିଗଲା)

---

## ( ତିନି )

ଦୃଶ୍ୟ—( ଘର-ଅଗଣା )

ସୁମୀ—ମଲା ମଲା, କି ଲାଜ କଥା ମ ! ସାଧୁଆଭାଇ ପୁଣି ଏମିତେ ! ଏବେ ତ କଅଣ କେତେ ଚଟା ଚଇତନ କାଟି ନଦା ବସ୍ତୁ ହେଇଛନ୍ତି ।
ରମୀ—ଆଲୋ ବଗାଡ଼ୀ ବଇଷମ । ବଅସ କାଳେ ହାବୁଡ଼େ ପଡ଼ି ଥାଆନ୍ତି କି— ଦେଖି ଥାଆନ୍ତୁ ।

ସୁମୀ—ମଲା, ମୁଁ କାହିଁକି କାହା ହାବୁଡ଼େ ପଡ଼ନ୍ତି ମ ? ତୋ ମନହେଲେ ତୁ ପଡ଼ୁନୁ ?

ରମୀ—ସତେ ମ, ପକା ଖଣ୍ଡେଟି ସିଏ । ଏବକୁ ପିଲା ଛୁଆର ବାପ ହେଲେ, ଘରଦୁଆର କଲେ—ସେତେବେଳେ ତ...

ସୁମୀ—କାହିଁକି ମ ? ବହିଙ୍କର ଯେବେ ମନ ମାନିଥିଲା—ହାତକୁ ଦ'ହାତ ହେଇପଡ଼ିଲେ ନାହିଁ ?

ରମୀ—ସେକଥା କେମିତେ ହଅନ୍ତା ମ ? ଫେର୍ ଦାଣ୍ଡ ପସନ୍ଦ ନାହିଁ ? ଆକାଶ କଇଁଆକୁ ଚଳଚ୍ଚା ମାଛ ! ସାଧୁଆଣଇ ସାଉକାର ଘର—ବୁଲା କଅଣ ? ଗାଆଁରେ ଟୁପ୍‌ଟାପ୍—ଭୁଟୁଭାଟ ହେଲେ । ସାଧୁଆଣଇର ତ ପୁଣି ସାବତ ମାଆ । ତେଇଁକି କୋଳରେ ତାଙ୍କର କେହି ବୋଇଲେ କେହି ନାହିଁ । ଉମୀ ମା'କୁ ତ ଜାଣିଚୁ ? ବାଜେଣୀ ବଳାଟିଏ ସେ । ତା' ପେଟରେ କଥା ରହୁଚି କୋଉଠି ? ସେ ଦିନକର ସାହୁଆଣୀ ଆଗେ କଥା ପକେଇ ଦେଲା—ହେଲେ ସିଧା ସଳଖ ନୁହ । ଉମୀ ମାଆ ମାଳପା ନଗେଇ ଦଉଦଉ କହିଲା ।

---

## ( ଚାରି )

ଦୃଶ୍ୟ ପରିବର୍ତ୍ତନ—( ସାହୁଘର )

**ଉମୀ** ମାଆ—ସାଉଆଣୀ ! ରଜା ଉଆସ ପରି କୋଠେଇ ଚଉକି । ଧନ ଘୂରି ଫାଟି ପଡ଼ୁଚି—ହେଲେ, ଜନ—ଆଖିରେ ପକେଇବାକୁ ନାହିଁ । ଦଇବ ସୁନାଥିଲେ କାନଦେଇ ନ ଥାଏ—କାନଥିଲେ ସୁନା ଦେଇ ନ ଥାଏ । ସତ ସିନା ଏ କଥା ।

ସାଉଆଣୀ—ହଁ, ସାଧୁକୁ ଆଇଷ ଦେଇ ଥାଆନ୍ତୁ । ସୁନା ବାନ୍ଧି ଥିଲେ କଉଡ଼ି । କାଲିକକାଲି ବୋହୂଟିଏ ଆସିବ । ଏ ଘରେ କୁଆଁ ଶବଦ ଶୁଭିବ । ମୁଁ ସେଗୁଡ଼ାକ କଣ୍ଡୁ ଭବେ ନାହିଁ ଲୋ ଉମୀ ବୋଉ !

ଓମୀ ମାଆ—ହଁ, ସେକଥା କଅଣ କଏ ଜାଣି ନାହିଁ ଆଉ ? ଗାଆଁ ଗୋଷ୍ଠୀକରେ ତ ନକ୍ଷୀ ସାଆନ୍ତାଣୀ ବୋଲି ହୁରି ପଡ଼ିଛି । ତେମେ ତ କଳିକାଳ ସାବିତ୍ରୀ ମାଆ ନୁହ । ହେଲେ ଦାଣ୍ଡ ସୁଲଭ ଆଉ ଦେଖି-ଲେଇଁ ନାହିଁ, ଭୁଣ୍ଡ କୋଉକାଳୁ ଷୀଷ୍ଟପିଠା ଟିକିଏ ଚୁଖିଲା ନାହିଁ । କାନରେ ଶଙ୍ଖମହୁରୀ ଶବ୍ଦ ପଡ଼ିଲା ନାହିଁ । ଏ ଗାଆଁରେ ତ ଖଳୁଆ ଖଚୁଆ ଉଣା ନାହାନ୍ତି । ବାଡ଼ୁଅ ପୁଅ, ଭେଣ୍ଡା ହେଲା । କାହା ଭୁଣ୍ଡରେ କିଏ ବାଡ଼ି ବତା ଦେଇଚି ? କିଏ କହୁଚି ସାବିତ୍ରୀ ମାଆ ବୋଲି ଏଡ଼େ ବଡ଼ ଭେଣ୍ଡା ପୁଅକୁ ବୁଢ଼ା ହେଲାଯାଏଁ ବାଡ଼ୁଅ ରଖିଛନ୍ତି । ପୁଅ ବାହାଘରକୁ ମନଧିଆନ ନାହିଁ ।

ସାଉଆଣୀ—ସତେ ଲୋ ଓମୀ ମାଆ ! ସେଇ କଥା ମୁଁ କାଲି ସାଧୁ ବାପାଙ୍କୁ କହିଲି ଯେ, ସେ କହିଲେ—ହଁ, ସେମିତି କନିଆଁ ହେଲେ ତ । ସାଧୁର ବାହା ନଗନ ଫିଟିଲେ ସିନା ? ହଁ, ଯିଏ ଯାହା ହାଣ୍ଡିରେ ଗୁଡ଼ଉଳ ପକେଇଥିବ ।

ଓମୀ ମାଆ—ଆମେ ତ ଫେର୍ ଖୋଜା ଖୋଡ଼ା କରିବା ।

ସାଉଆଣୀ—ତୁ ତ ପାଞ୍ଚ ଗାଆଁ ଯାଉଚୁ । କୋଉଠି ହେଲେ ବୁଝ । ମୁଣ୍ଡକୁ ମୁଣ୍ଡ ପଡ଼ିଲେ ସିନା !

ଓମୀ ମାଆ—ସାଉଆଣୀ ! ମୋ ମଉଳା ପୁଅ ଘାଇ ଆସିଥିଲା ଯେ—ସେ କହୁଥିଲା ଭଁପୁର ଚଉଧୁରୀ ଘର ଝିଅ କଥା ।

ସାଉଆଣୀ—ତୁ ଦେଖିଚୁ ?

ଓମୀ ମାଆ— ହଁ, ତନଘାଲ ତଳେ ଯାଇଥିଲି, ଦେଖିଚି, ଚମ୍ପାଫୁଲ ପରି ଗୋରା । ଡେଙ୍ଗୀ ନୁହ କି ବାଉଁଣୀ ନୁହ । ଦାନ୍ତ ହାତ କୁନ୍ଦିଲା ପରି । ଆଖି ଦୋଟି ଜଳଜଳ' ଏବକୁ ତ ବଅସ ନାଗିଲା । ଆହୁରି ସୁନ୍ଦର ହେଇଯିବଣି । ଝିଅଟି ନା କମଳା ।

ଘନ—(ନେପଥ୍ୟରୁ) ବୋଉ, ବୋଉ !

ସାଉଆଣୀ—ହେଇଟି, ଡାକ ପକେଇଲାଣି । ଉଠ, ଉଠ—ଶୁଣ୍ । ଆଉ ମୋ ମାଲୁପା ନଗା । ଦୋଅଡ଼ା ଦେବ ପୁଅକୁ । ବେଳ ବୁଡ଼ୁକୁ ଭୁ ଆସିବୁ ଟିକଏ ଊର୍ମୀ ମାଆ । ସାଧୁବାପାଙ୍କ ଆଗେ କଥାଟା ପକେଇବା ।

ଊର୍ମୀ ମାଆ—ହଁ ହଁ, ଦଇବ ବଗୃରଲେ ଏଇ ମଗୁଶିର ମାସରେ ତ ବଥିପଡ଼ିବ । ଏ ଗାଆଁ ଦୁଲୁ ଦୁଲୁ କମ୍ପିବ । କଏ କେତେ ଆଶା କରିଛନ୍ତି ।

ଘନ—(ନେପଥ୍ୟରୁ) ବୋଉ, ଭୋକ କଲାଣି ।

ସାଉଆଣୀ—ହଁ ରେ ବାପା ! ଗଲି । ଯା, ଊର୍ମୀ ମାଆ ।

ଊର୍ମୀ ମାଆ—ମୋର ଏକା ଖଣ୍ଡେ ମାଣିଆବନ୍ଧୀ ଶାଢ଼ୀ—ନାଳିଆ କୁମ୍ଭ ପଡ଼ିଥିବ । (ହସିଲା)

ସାଉଆଣୀ—ହଉ ହଉ, ଦେବ । ବୁଢ଼ୀକାଳେ କେତେ ସବାଗ ଲୋ ତୋର ! କଉଣ ଶାଶୁଘର ଯିବୁ ?

ଊର୍ମୀ ମାଆ—ଶାଶୁଘର ନୁହ ଯେ—ଯମଘର ଯିବ । ମନର ଓରମାନ ମେଣ୍ଟେଇ ଦେଇଥିବ । ଗେରସ୍ତକୁ ତ ମାଗି ମାଗି ହେଲାନାହିଁ । ଯାଉଛି ହେ ସାଉଆଣୀ ! ଆସିବ ପଛେ ।

(ଦୁହେଁ ଦୁଇଆଡ଼େ ଗଲେ)

---

## ( ପାଞ୍ଚ )

(ଘର ବାହାରପଟ ବାରଣ୍ଡା । ବାହାଘର ବାଜା ଶୁଭୁଛି)

ଊର୍ମୀ—ସତକୁ ସତ ଫଗୁ ଦଶମୀକ ସାଉ ଦୁଆରରେ ଶଙ୍ଖମହୁରୀ ଶୁଭିଲା । ଗାଁଦାଣ୍ଡେ ଉଚ୍ଛୁଳେଇ ବାଜା ଗ୍ରେଷଣୀକର ସାଧୁଆଣ୍ଡାଳ ଦୋଳ ମୁକୁଟ ପିନ୍ଧି ବାହାରିଲା ।

**ସୁମୀ—ସାଧୁଆଣ୍ଡଇ ଶଶୁର ଘର ବଡ଼ଲୋକ—ନା ?**

ରମୀ—ମଲା, ଶୁଣୁଚୁ ପରା ଭୁଁଇଁପୁର ଚଉଧୁରୀ ଘର ! ଦଶଖଣ୍ଡ ଶଗଡ଼ ନନ୍ଦ ଯାନ ଯଉତୁକ ଦେଇଥିଲେ । ଏଠି ସାଉଘର ବୋଳିଭାତ ଏବେ ଲୋକ ପାଶୋର ନାହାନ୍ତି ।

ସୁମୀ—ବୋହୂଟି ସତେରେ ସୁନ୍ଦର ନାଁ ?

ରମୀ—ସାଧୁଆ ଭାଇର ଏ ଘରଜାକୁ ତ ଦେଖିଚୁ ? କେଡେ ସୁନ୍ଦର ! ଯେମିପରା ତା କାଣିନଖକୁ କଛ ହବ ନାଇଁ ଲୋ !

ସୁମୀ—ଆଉ ଏ ଅଣ୍ଡିରଚଣ୍ଡୀ ବୁଲୀ କଥା ପୁଣି କଅଣ ହେଲା ?

ରମୀ—ବୁଲୀ ବାରବୁଲୀ ହୋଇ ରହିଲା । ହେଲେ ପକ୍‌କା ସିଆଣୀ ସେ । ସେ ଆଗପର ସାଉ ଘରକୁ ସେମିତି ଯା'ଆସ କରୁଥାଏ । ସତେ ଯେମେତେ ତା'ମନରେ କଛି ଘୁରୁଗମ ନାଇଁ । ଦାଣ୍ଡକୁ ସେ କଛି ଦେଖେଇ ହଉ ନ ଥାଏ । ଯେମେତେ କୋଉକଥା ତାକୁ ବାଧୁ ନାଇଁ ।

ସୁମୀ—ଦାଣ୍ଡଲୋକ କଛି କହନ୍ତି ନାଇଁ ?

ରମୀ—ଲୁଣ୍ଡରେ ସିନା କଛି କହନ୍ତି ନାଇଁ, ହେଲେ ବୁଲୀ ବାଟରେ ଗଲେ ହସାହସି ହଉଥାଆନ୍ତି । ଆଖି ଟିପାଟିପି ହଉଥାନ୍ତି । ସେ ସବୁ ଦେଖି ଅଜଣା ଗୁଡ଼ଲ ଭାତ ଖାଇଲା ପରି ତୁନ ହୋଇ ଦାଣ୍ଡେ ଦାଣ୍ଡେ ଚାଲିଯାଏ ।

ସୁମୀ—ସାଧୁ ଭାଇ ? ସେ କଛି କହନ୍ତି ନାଇଁ ତାକୁ ?

ରମୀ—ସେ ତ ମରଦପୁଅ, ପୁରୁଷ ଭଅଁର, ବାସଙ୍ଗ ଫୁଲ ପାଇଥିଲେ, ପଦ୍ମଫୁଲ ପାଇଲେ । ତାଙ୍କର କଅଣ ? ଲୁଣ୍ଡରେ ସିନା କଛି କହୁ ନ ଥିବେ, ହେଲେ ବୁଲୀକ ଦେଖିଲେ ସବୁକଥା ତାଙ୍କର ହେତୁ ପଡ଼ ଯାଉ ନଥିବ ?

ସୁମୀ—କେଜାଣି ଲୋ ମା ! ମରଦଙ୍କ କଥା ମରଦେ ସିନା ଜାଣନ୍ତି ।

ରମୀ—ଭଲା କହିଲୁ ? ମନ ବକାକଣା କଅଣ ଦୁ'ଥର ହୁଏ ?

ସୁମୀ—ସେକଥା ମୁଁ କି ଜାଣେ ? ମନହେଲେ ତୁ ଏବେ ଥରେ କାହାକୁ ମନଦେଇ, ପରଖୁ ନାହୁଁ । (ହସିଲା)

ଋମୀ—ମଲୁନାହିଁ ଲୋ ପୋଡ଼ାମୁହୀଁ । ନାଇଁମ, ମୁଁ କଅଣ କହୁଥିଲି କି ବୁଲି ତ ପାଖେ ପାଖେ ଛାଇ ପରିଥାଏ । ସାଧୁଭାଇ କମଳୀ ନୂଆବୋହୂକୁ ସୁଖ ପାଉଥିଲେଟି ?

ସୁମୀ—ପାଉଥିଲେ ପାଉଥିବେ, ନ ପାଉଥିଲେ ନ ପାଉଥିବେ । ତା' ଏବେ କିଏ ଜାଣେ ? ବାହାଘର ବରଷ ପୂରଣ ହେଇଛି କି ନାହିଁ ବୁଲି ତା ଖେଳ ଖେଳିଲା ।

ଋମୀ—କେମେତେ ? ସେ ତ ଓର ଉଣ୍ଡୁଥିଲା । ଦିନେ ଦି'ପହରେ ନୂଆ-ବୋହୂ ମୁଗଗଣ୍ଡେ ଭାଜୁଛନ୍ତି । ବୁଲି ପହୁଞ୍ଚିଗଲା ସେତିକିବେଳେ—ଆଖି ଆଗରେ ଛାଇପରି ସବୁ ଦିଶି ଯାଉଚି ସେଦିନ କଥା ସବୁ । କହୁଚି ସେ କଥା, ଶୁଣ୍ । (ଦୃଶ୍ୟ ପରିବର୍ତ୍ତନ)

---

## ( ଛଅ )

ଦୃଶ୍ୟ—ସାଧୁଙ୍କ ଘର

ବୁଲି—ଆଁ ! କେଡ଼େ କଥା ମ । ବୁଲି କଅଣ ମରିଯାଇଥିଲା କି ? ତାରପରା ଦିହ ସିଝି ରଙ୍ଗ ପଡ଼ିଗଲାଣି ! ତେମେ ବସି ନୂଆବୋହୂ ମୁଗ ଭାଜୁଛ ଏଇ ନିଆଁ ଧାସରେ ?

(ଅଳ୍ପ ହସିଦେଲେ କମଳୀ)

ଉଁଃ ! ଆହୁରି ହସୁଚ ? ଦେଖେଁ ଦେଖେଁ ଆଖି । ମୁହଁ ବୁଲେଇଲ ଟିକିଏ ମୋ'ଆଡ଼େ ।

କମଳୀ—(ହସି) କଅଣ ମ ! ମୁହଁ କଅଣ ଦେଖିନଉଁ ମୋର ?

ବୁଲ୍ଲୀ—ହଁ, ଦେଖିଲ । ଆଣିବଟି କାନଂଠା । ମୋର ତ ମହଲ ଲୁଗା ! ଆଖିରେ ଧୂଆଁ ପଶି କଜଳଗାର ବୋହି ପଡ଼ିଲାଣି । ନଆଁ ଧୂଆଁ ସହିବ ତମର ଆଖି ? ସେଥିରେ ପୁଣି ମୁହଁରୁ ଗମଗମ ଝାଳ ବୋହିଯାଉଚ୍ଛି—ଦେଖା, ପୋଛିଦିଏଁ ।

କମଳୀ—ଥାଉ ମ, ମାଇପୀ ଜନମ ତ ଚୁଲି ମୁହଁକୁ । ଆଉ ଦି'ଘର ହବ । ଏକାଥରେ ସାରିଦିଏଁ । ବୋଉ ପରା କହିଛନ୍ତି କାଲିକି ଉଆ ରନ୍ଧା ହବ । ମହାଲକ୍ଷ୍ମୀଙ୍କ ପାଖେ ଖିଣ୍ଡି ଖେଚେଡ଼ି ଭୋଗ ନାଗିବ । କାଲି ମାଣବସା ପହିଲ ପାଳି ପରା !

ବୁଲ୍ଲୀ—ମଲି ମୋର, ବୋଉଙ୍କୁ କଅଣ ମୁଗ ଭଜି ଆସେ ନାହିଁ ? କାଲି-କାଲିକ ତ ପୁଣି ସବୁ ସେ କରୁଥିଲେ ।

କମଳୀ—ହଁ, କରୁଥିଲେ ଯେ, ମୋ ହାତ-ଭଜା ପରା କୁଆଡ଼େ ଭଲହୁଏ, ସେଇଥିକି—

ବୁଲ୍ଲୀ—ଥାଉ ଥାଉ, ତୁମେ ନୂଆବୋହୂ ଆଜି ସିନା ଏ କୋଠା ମାଡ଼ିଲ, ହେଲେ, ବୁଲ୍ଲୀ ତ ଏଇଠାରେ ଭୂଇଁଫୁଟା । ଲୁଚିଛି ନା ଗୋଡ଼ ଦି'ଠା ଦିଶୁଚି । ଶଗଡ଼ିଆ ଦେଖିଲେ ମୁଣ୍ଡ ବୋଝିଆର ପେଟଂଠଣା ହୁଏ । ସବୁଜାଣେ ଲୋ ନୂଆବୋହୂ ! ତୁଣ୍ଡ ମୁଦି ବସିଥାଏଁ । ପୋଡ଼ା ଆଖି ଦି'ଠା ତ ଫୁଟି ଯାଇ ନାଇଁ—ସବୁ ଜଳ ଜଳ କରି ଦେଖେଁ । ଉଠ ଉଠ, ମୁଁ ଭଜି ଦଉଚି, ତୁମେ ନଆଁ ପାଖରୁ ଉଠିବଟି । ମୋ ମୁଣ୍ଡ ଖା' ନୂଆବୋହୂ । ମୁଁ ଆସିଥିଲି, ହେଇଟି ଅନେଇଲ, ଅଧଁଲେଇ ଫୁଲଗୁଞ୍ଛି ଆଣିଚ୍ଛି । ଗଣ୍ଠିବାନ୍ଧି ଦେଇଯିବି ବୋଲି ଯେ—ଗୁଡ଼, ଉଠ ମ । ତୁମେ ଯା—ପୋଛିପାଛି ହେଇପଡ଼ । ଆଃ, କି ସୁନ୍ଦର ଦିଶୁଚି ସେ ରଙ୍ଗମୁହଁ ! ଛିଃ, କଅଣ କହିବି ସେ ଗୁରା ? ତୁନି ହ'ରେ ତୁଣ୍ଡ ।

କମଳୀ—କାହିଁକି ମ ? କହୁନୁ କଅଣ କହିବୁ ?


Digitised by srujanika@gmail.com

ବୁଲ୍ଲୀ—କହୁଛି ନାହିଁମ, କଅଣ କହିବ ? ତୁମେ ଯା—କଅଣ କହିବ—କିଏ ଯେବେ ଫେର୍ କାନ ପାରିଥିବ—ମୋ ଦଶା ଗାଆଣି ଗାଇବ ନାହିଁ ।

କମଳୀ—ନାଇଁମ, ଏ ଖଞ୍ଜାରେ କେହି ନାହାନ୍ତି, କହ ।

ବୁଲ୍ଲୀ—କଅଣ ଆଉ କହିବ ମ ନୂଆବୋହୂ ! ଘିଅହାଣ୍ଡିରୁ ଗୋଟେ ଟୋପନ୍ତ ସିନା ! କହିଲ ଦେଖି, ବୋହୂବୋଲି ଦିନେ ଭଲ ମୁଣ୍ଡଟା ହେଲେ ବାନ୍ଧି ଦେଇଛନ୍ତି ଶାଶୁ ?

କମଳୀ—ନାଇଁ, ମତେ ତ ତୋ ହାତ ମୁଣ୍ଡବନ୍ଧା ସୁଖ ନାଗେ ।

ବୁଲ୍ଲୀ—ହଁ ମ, ସେ ଗୁର୍ ଆଉ ବୁଲ୍ଲୀକି କହିବ ନାହିଁ । ବୁଲ୍ଲୀ ଉଡ଼ିଗଲା ଚଢ଼େଇର ପର ଗଣିଦେବ । କୋଉ ଭାଗ୍ୟକୁ ତମପରି ନୂଆ-ବୋହୂଟିଏ ପାଇଛନ୍ତି ସେ । ନଇଲେ ଯେତେହେଲେ ତ ସାବତ ଶାଶୁ ।

ସାଧୁବୋଉ—( ନେପଥ୍ୟରୁ ) ବୁଲ୍ଲୀ ଅଛୁକି ଲୋ ! ବୁଲ୍ଲୀ !

ବୁଲ୍ଲୀ—ହଁ ହଁ, ତିଙ୍କିଶାଳେ ଅଛି । ଯିବି ?

ସାଧୁବୋଉ—ହଁ ହଁ, ଟିକିଏ ଆଇଲୁ ଆଇଲୁ ।

ବୁଲ୍ଲୀ—ହେଲା ? ଦେଖିଲ ! ମୁଁ ଆଇଲାବେଳେ ସେ ଦେଖିଛନ୍ତି । ଘଡ଼ିଏ ପରା ସେ ତମ ପାଖେ ବସେଇ ଉଠେଇ ଦେବେ ନାହିଁ । ଏଇନେ ପଚାରିବେ ବୋହୂ, ମୋ କଥା କଅଣ କହୁଥିଲା କଲେ ? ମହାକାଳ ଫଳ ବାହାର ସୁନ୍ଦର—ଭିତର ପୋଡ଼ା ଅଙ୍ଗାର ।

ସାଧୁବୋଉ—ବୁଲ୍ଲୀ !

ବୁଲ୍ଲୀ—( ବଡ଼ ପାଟିରେ ) ହଁ, ହଁ ଗଲି । ( ତୁନି ତୁନି ) ହାତ ଉଚ୍ଛୁଳା ପକେଇ ଦେବେ ଲୋ ମା ! ଦେଖିଲ ? ଯାଉଚି ବାହାରି । ଏ ଭାରଟା ତୁମେ ପକେଇଦବ । ନୂଆବୋହୂ ! ଆମେ ତ ଦୁଃଖୀ-ଲୋକ । ହିତ ସହେନାଇଁ ବୋଲି କଅଣ ଗୁରେ କହି ପକେଇଲି । ମୋ ରାଣଟି । କଥା ପେଟରେ ରଖିବ । ଯାଉଚି ମୁଁ ।

କମଳୀ—ପଛେ ଆସିବୁଟି ?

ବୁଲ୍ଲି—ହଁ ମ, ହେଇଟି ପର, କାନରେ ଫୁଲହାର । ସେ କାହା ପାଇଁ ମ ଆଉ ? (ଚାଲିଗଲା)

ସୁମୀ—ବୁଝିଲୁ ସବୁ କଥା ?

ରମୀ—ଆଲୋ ମାଆଲୋ, କେଡ଼େ ଖଳ କାହିଁକି ମ ସତେ ସେ ବୁଲ୍ଲୀଟା ! ବୋହୂ ମନଟା ଶାଶୁଠୁଁ ଭଙ୍ଗାଉଚି କେତେ ଖଞ୍ଜରେ ସତେ !

ସୁମୀ—ସେତିକି ନୁହଁ ମ ! ଡାହାଣୀ ସେଇ—ଗୁଣିଆ ସେଇ । ନାଗି ଜାଣେ—ଝାଡ଼ି ଜାଣେ । ସେ ପାଖେ ଶାଶୁଙ୍କ ମନକୁ ଫେରି ନବ କେମିତି ? ବୁଲ୍ଲି ଗୋଟାପଣେ ବୋହୂର ଯେମିତେ, ଶାଶୁର ସେମିତେ । ଶାଶୁ ଡାକିଲାରୁ ତାଙ୍କ ପାଖେ ହାଜର ହେଇଗଲା । ତା' କଥା ଦେଖ୍ । କହୁଛି, ଶୁଣିବୁ— (ଦୃଶ୍ୟପରିବର୍ତ୍ତନ)

---

## ( ସାତ )

( ଘର ଭିତର । ବୁଲ୍ଲି ପ୍ରବେଶ )

ସାଧୁବୋଉ—କଲୋ ବୁଲ୍ଲି ! ତୁ ଏଇଘରେ ଥିଲୁଟି ? ଡାକିଲେ ଟିକିଏ ଶୁଣୁନାହୁଁ ? ଏଗୁଣଟି ତୋର ଆଉ ଗଲାନାହିଁ ।

ବୁଲ୍ଲି—ମତେ ମିଛରେ ସିନା ତମେ ଦୋଷ ଦଉଚ ମାଉସୀ ! ମୁଁ କଅଣ ମନକୁ ଅଟକୁଥିଲି ? ତମ ଘରକୁ ଆସିବାକୁ ଏଥର ଡର ନାଗିଲାଣି । ତେଣେ ନୂଆବୋହୂ କାହିଁକେ ଅଳତା ନଗେଇଦେ, ଫୁଲ ଗୁନ୍ଥିଦେ, ମୁଣ୍ଡ ବାନ୍ଧିଦେ । ଏଣେ ତେମେ ହଠ୍ ବୋଇଲେ ଚୁଟ୍ ଡାକ ପକେଇବ । ମୁଁ ଏବେ କାହାର ହେବି ? ହେଇଟି ଦେଖୁନ କାନକୁ ?

ସାଧୁବୋଉ—କଅଣ, ଦେଖେଁ ।

ବୁଲୀ—ଅଇଁ ଲେଇ ଫୁଲ । ସେ ଗୁନ୍ଥାହେବ—ନୂଆବୋହୂଙ୍କ ଗଣ୍ଡ ବନ୍ଧାହେବ ? ଚିକଟିକ ଫୁଲଭଲ କେମିତି ମାଳ ଗୁନ୍ଥିବ ? କହିଲ ମାଉସୀ ? ପୁଣି କଅଣ ମଠହେବ ନାହିଁ । ଗୁନ୍ଥା ଅଧା ହେଇଚ । କୁଆଡ଼ୁକୁ ହେବ କହିଲ ମାଉସୀ ! ସେଥିରେ ପୁଣି ଏମିତି ଗୁନ୍ଥ, ସେମିତି ନଗା—ହଜାରେ ବଖାଦ । ଏତେ କଥା ତ ମୁଁ ଜାଣି ନ ଥିଲି କି ଶିଖି ନ ଥିଲି—

"ବାପ ଅଜାକାଳେ ବାଇଦ ନାହିଁ ନା—
ବାଇଦ ଶବଦ ଶୁଣିବ କାହିଁ ?"

ଘୁଣ୍ଡ ଘୁଣ୍ଡ, ଏଣୁ ମାଇଲେ ଗୋହତ୍ୟା—ତେଣୁ ମାଇଲେ ବ୍ରହ୍ମହତ୍ୟା । ଯେତେ ମନ କଲେ ଏ ଭୁଣ୍ଡ ରହୁନାହିଁ । ହଁ କଅଣ କହୁଥିଲ କହିବଟି, କ ପାଇଟି କରିବ କହ । ଫେର୍ ବେଗେ ବୋହୂଙ୍କ ପାଖକୁ ଯିବ । ସଞ୍ଜ ଆଗରୁ ମୁଣ୍ଡ ବନ୍ଧାହେବ, ଅଳତା ନଗା ମରିବ —କେତେ କହିବ ସେ ଗୁଣ ? "ଖଜୁରୀ ଗଛର କାହୁଁ ବାହୁନବ ମୂଳରୁ ପାହାଚ ପାହାଚ !"

ସାଧୁବୋଉ—( ହସି ) ବୋହୂଟା ପିଲାଟା । ସେଇଟା କଥା ଧରିବୁ ନାହିଁ, ଏଇନେ ତାଙ୍କର ସରାଗ ବେଳ । କୋଉଠି ବାପଘରେ ଥିଲେ କେଉଁ ବୁଲୁ ଥାଆନ୍ତି ! ଏଠିକି ଆସି ଘର କରଣା କରୁଚ । ହାତରୁ ପରା ମୋର ପାଇଟି ଛଡ଼ାଇ ନେଇଯିବ ସେ । ଆହା ! ଅଇ-ଶୁଲକ୍ଷଣୀ ହୋଇଥାଉ ବୋହୂ ମୋର ।

ବୁଲୀ—ହଁ ହଁ, ସେଇକଥା କହ । ତମ ମୁହଁରୁ ସେଇକଥା ବାହାରୁ, ତେଣେ ସେ କହୁଥାଉ—ଯେତେହେଲେ ତ ସାବତ ଶାଶୁ ।
"ଦାଅଁ ନୁହ ପଥର—ଗାଈ ନୁହ ଗୋବର !"

ସାଧୁବୋଉ—କଅଣ ଗୁଡ଼ାଏ ଏଇମିତି କହୁଚୁ ଲୋ ?

ବୁଲି—ମଲି—ଯାହା ଦେଖୁଚ, ଯାହା ଶୁଣୁଚ । ତମ ପରା ଶାଶୁ, ମାଆଠୁଁ ବଳି ମାଆ ( କାନ୍ଦ କାନ୍ଦ ହୋଇ ) ସେ ପୁଣି କଅଣ ନା ସାବତ ଶାଶୁ ! ଦିନରାତି ଖଟେଇ ମାରୁଚନ୍ତି—ଖାଇବେଳେ ମୁଗ ଭାଜିବାକୁ କହୁଚନ୍ତି ? ଏଗୁଡ଼ା କଅଣ କାନରେ ଶୁଣିବା କଥା ? ଏତିକି ତ ନୁହେ—ଏମିତି କେତେ ଅଛି, ପୁରାଣ-ପୁରାଣ । ଅଠର ଖଣ୍ଡ ଭାରତ ଏଇ ପେଟ ଭିତରେ ରଖିଛି । ବେଳ ପଡ଼ିଲେ କହିବ— ସବୁ ଶୁଣିବ ମାଉସୀ ! ତୁମେ ସିନା ସଭିଙ୍କି ଆପଣାର କରି ଅଣ୍ଟିରେ ପୂରେଇ ଥାଆ—ହେଲେ ସେ ତ ତଣ୍ଟି କାଟିବାର ବସିଛନ୍ତି ।

ସାଧୁବୋଉ—ସତେ କି ଲୋ ! ଆପଣାର ବୋଲି ତ ଗିରା ପଡ଼ିବାକୁ ନାହିଁ । ଦିଅଁ ଜାଣୁଥିବେ, ମୁଁ ତ ଦିନେହେଲେ ପର ବୋଲି ବାଛିନି ନାହିଁ । ଏତେ କରିଧରି ଓଲଟା ବୋଲଣା ଶୁଣିବି ?

ବୁଲି—ସବୁ କଥା ଗଲା । ସେ ପୁଣି କହିବେ ଆଣ୍ଟୁ କୁଡ଼ୀ ମୁହଁ ଚାହିଁଲେ ବରକତ ନାହିଁ । କେତେ ବାଧୁଣିଆ କଥା କହିଲ ସାଉଆଣୀ ! ଏଗୁଡ଼ା ଭଗାରିକ ହେଲେ କହି ଯୋଗାଏ ? ପିଲାଝିଲା ହବା ନ ହବା କଅଣ କାହା ହାତର କଥା ? ଗୁଡ଼ି, କଅଣ ଶୁଣିବ ସେ ଗୁଡ଼ାକ—ମନ ଦୁଃଖ ହବ । ଆପଣା କଥା ତ କାହାକୁ କହିବ ?

ସାଧୁବୋଉ—ସତେ ଲୋ ବୁଲି ! କୋଳରେ ପିଲାକରି ପାଳି ଆଣିଲି । ଦିନେହେଲେ ବାଦ ଛେଦ କରିନାହିଁ । ମୋ କର୍ମରେ ପୁଣି··· (କାନ୍ଦି ପକେଇଲେ)

ବୁଲି—ଆହା ହା ! ଲୁହ ଗଡ଼ାନାଇଁ ସାଉଆଣୀ ! ଥା ଉ ଥାଉ, ମରଣ ହଉ ମତେ, ମୁଁ ନିଆଁ ନାଗୀ କାହିଁକି ସବୁକଥା କହି ମଲିଟି ? ଦାନା ଖାଉଚ ବୋଲି ସିନା ସହି ପାରିଲି ନାହିଁ । ହେଇଟି କାନ

ମୋଡ଼ ହଉଚ, ଗାଲ ଗୁପୁଡ଼ ଖାଉଚ (ଗୁପୁଡ଼ା ମାରହେଲ) ଆଉ ବଡନ ହେଲେ—

ସାଧୁବୋଉ—କାହିଁକ ମ ? ସାତପର ହେଇ ତୁ ହେଲେ ତ ମୋର ବୋଲ ଆମ୍ଭ ପଦେ କହ୍ଲୁ ! ହଉ ଧରମ ଯେବେ ଥିବ (କାନ୍ଦଲେ)

ବୁଲି—ଥାଉ, ଥାଉ ସାଆନ୍ତାଣୀ । ସଅଁପ ନାହିଁ ଆଉ, ତମ ମୁହ ଟୋପାକ ସାତଟୋପା ରକତ ହୋଇ ବାହାରିବ, ଗୁଡ଼ । ଯେତେହେଲେ ତ ପୁଅଠୁ ବଳ ପାଳଚ । ଏଗୁଡ଼ା ଆଉ ମନରେ ଧର ନାଇଁ । ଉଠ ଉଠ, କଅଣ ଯାଇଟି ଥିଲ ପରା ।

ସାଧୁବୋଉ—ହଁ, ଚୁଲିନାଆଁ । ବଡ଼ ଗଣ୍ଡେ ବଢ଼ୁରେଇଥିଲି ଯେ—

ବୁଲି—କାହିଁକ ଦଉନା, ବୋହୂଙ୍କୁ ଦେଇ ଆସିବ । ମୋ ହାତରେ ଟକ୍କଣ ହୁଏ ନାଇଁ । ଦିଅ, କଅଣ ଏତିକରେ ଗଣ୍ଠି ଦୋହଲିଯିବ ?

ସାଧୁବୋଉ—ଗୁ'ଲ, ଦଉଚ । ଖଦାଶାଳେ ଅଛି । ଜାଣିଲୁ ବୁଲି ! ସବୁ-କଥା ମୋର ମନେ ରହିଲା । ହେଇଟି କାନରେ ଗଣ୍ଠି ପକଉଛି । ଗୁଲ । (ଦୁହେଁ ଗୁଲିଗଲେ)

( ଦୃଶ୍ୟ ପରିବର୍ତ୍ତନ )

ସୁମୀ—ଜାଣିଲୁ ରମୀ ! ମନ ଭାଙ୍ଗିଲେ ଚ୍ଛୁପରା—ହାଣ୍ଡି ଭାଙ୍ଗିଲେ ଖପରା । ସେଇଦିନ ଖଲବ ମଞ୍ଜି ପୋତା ହେଲା । ମାସଟାଏ ତ ଯାଇନାହିଁ । ବୁଲି ତ ଚୂଲିରେ କୁହୁଳା ପକେଇଦେଲା ।

ରମୀ—କଅଣ ହେଲା ସେଇଠୁ ?

ସୁମୀ—ଶେଷପାଳି ମାଣବସା—ରାତି ପାହିଲେ ମାଣ ବସିବ । ଶାଶୁବୋହୂ ରାତିରେ କଥା ଭାଷା ହେଲେ ଘରେ ।

ରମୀ—କଅଣ ?

ସୁମୀ—ଶାଶୁ କହିଲେ, ମୁଁ ତ ସବୁବରଷ ମାଣ ବସଉଚ ବୋହୂ ! ତମେ ଏ ବରଷ ରାତି ଜାଙ୍ଗୁଲୁ ଜାଙ୍ଗୁଲୁ ହଉଥିବ, ଗାଧୋଇ ଆସି

ମାଣ ବସେଇବ । ମଗୁଶିର ସରନ୍ତୁ । ସେ ବର୍ଷ ଶୀତ ଯେ ନାହିଁ ନ ଥିବା ।

ରମୀ—ତେଇଁକି ଏକୁଟିଆରେ ବୋହୂ ପିଲାଟାକୁ ଅନ୍ଧାରୁଆରୁ ପଠଉଛନ୍ତି ?

ସୁମୀ—ମଲା, ସେତେବେଳକୁ ଘର ଖଟଖାଟ ନାଗିଗଲାଣି । ଢ଼ାଁଙ୍କ ମନ ଧାଟିଯାଇଛି । ବୁଲୀ ତ ନଖ ଘଷୁଥାଏ । ପୁଅ ପାଖେ ପଦେକୁ—ତା ପାଖେ ପଦେ ।

ରମୀ—ମଲା, ପଚୁରୁ ନାଇଁ ଉତ୍ତରୁ ନାଇଁ—ପୁଅ ମୁହଁ ଏଡ଼ଉକୁ ତା ମୁହଁ ଏଡ଼େ ! ସାଧୁଭାଇ ହେଲେ ଏକଥା ସମୁଝିଲେ ନାହିଁ ?

ସୁମୀ—ଆଉ ସମୁଝା ସମୁଝି କ ମେଘରେ ହେଲା କାହିଁ ? ସେଇ ବୁଧ ପାହାନ୍ତ ତ କମଳୀ ନୂଆବୋହୂ ଗାଧୋଇଗଲା ଯେ, ଯାଇଛି । ରୁକୁଣା ରଥ—ଅଣ ନେଉଚି । ଏଇ କାଜଲ ଡୋଙ୍ଗାରେ ଗୋଡ଼ ଖସିଗଲା—ତିନଦିନକେ ଗାଣ୍ଠିଆଳ ହୋଳା ଦେଖିଲା ମଡ଼ାଟେ ଭାସୁଚି ।

ରମୀ—ଆହା ହା, ବଚ୍ଚର ଅଦୋଷରେ ମଲା ସିନା !

ସୁମୀ—କଥା କଅଣ ନୁହେଁ ? ହଉ ହଉ ଝୁପଝାପ ସବୁ କଥା ଫୁଟି ବାହାରିଲା । ବୁଝବୁଝ ଯଜ ମାଉଁସରେ ଅଁ ସେଇ ପକାଉଚି କିଏ ନା—ବୁଲୀ । ଗାଁଯାକ ତ ଏକ ମେଣ୍ଟ ହୋଇଗଲେ ।

ରମୀ—ବୁଲୀ କାନରେ ଏକଥା ପଡ଼ିଲା ନାଇଁ ?

ସୁମୀ—ହଁ, ଶୁଉଣ । ବୁଲୀକ ଖୋଜା ପଡ଼ିଲା । କିଏ କହିଲା ହାଣି ଦିଅ, କିଏ କହିଲା ମାରିଦିଅ । ଦେଖିଲାବେଳକୁ କୁଡ଼ିଆ କବାଟରେ କୋଳପ ପଡ଼ିଚି । ଲୋକେ ରାଗରେ କୁଡ଼ିଆ ଖଣ୍ଡିକ ଭାଙ୍ଗି ପକେଇଲେ । ଗାଆଁରେ କୋକୁଆ ଭୟ ହୋଇଗଲା । ରାତି କି ଦିନ ପହରା ଦେଇ ଘର ଗାଁ ଲୋକେ ପାଳି କରି କୁଡ଼ିଆ ଦୁଆର ଜଗି ବସିଲେ !

ରମୀ—ବୁଲୀ ଗଲା କୁଆଡ଼େ ? କଅଣ ଗାଆଁ ଗୁଡ଼ ପଳାଇଲା ?

ସୁମୀ—ତାକୁ ଆଉ ପଳେଇବାକୁ ଅଛି କାହିଁ ? ଏଇ ଯୋଡ଼ା ଆମ୍ବ ଗଛରେ ଚଢ଼ି ଦୋଦନ ଚାଲ ଲୁଚି ରହିଲା ଯେ ।

ରମୀ—ଧନ୍ୟ ଲୋ ଟୋକୀ !

ସୁମୀ—ହେଲେ ରହି ପାରିଲା ନାହିଁ । କେତେ ଭୋକ ଉପାସରେ ଅନିଦ୍ରା ହୋଇ ରହିବ ? ଦିନେ ରାତିରେ ଏଇ କଜଳ ଡୋବାରେ ଗୋଟେ କଅଣ ଦୁଲ୍‌କିରି ପଡ଼ିଲା ।

ରମୀ—ବୁଲୀ ନୁହେ ତ ?

ସୁମୀ—ଆଉ ପୁଣି କିଏ ? ଗଛ ଡାଳ ତ ଡୋବାକୁ ଡାଙ୍ଗି ଚି । ସମ୍ଭାଳି ପାରିଲା ନାହିଁ । ହାତ କି ଗୋଡ଼ ଖସିଗଲା, ଖସି ପାଣିଲା । କଅଣଟାଏ ପଡ଼ିଲା ବୋଲି କେଉଁଠେ ଜାଲ ପକେଇଲେ । ଦେଖିଲାବେଳକୁ ଜାଲରେ ବୁଲୀର ମଡ଼ା । ସେଇଠୁ ଗାଆଁ ଲୋକେ ଚୁପ୍ ହୋଇଗଲେ । କାହାରି ତୁଣ୍ଡରୁ ଆହା ପଦେ ନାହିଁ । କିଏ କହିଲା ଦଇବ ଦଣ୍ଡ ଦେଲା । କିଏ କହିଲା ବୁଲୀ ଯୋଉ ମଞ୍ଜି ପୋତିଲା—ସେଇ ଫଳ ଖାଇଲା । ସେଇଦିନୁ ବେଳବୁଡ଼ ହେଲେ କେହି ଆଉ କଜଳଡୋବା ପାଖ ମାଡ଼ନ୍ତି ନାହିଁ ।

ରମୀ—ତୋ କଥା ଶୁଣି ଦେହଟା ମୋର ଶୀତେଇ ଉଠୁଛି ଲୋ ସୁମୀନାନି, ଚାଲ ଚାଲ—ଘରକୁ ପଳେଇବା । ମାତ୍ର ଅନ୍ଧାରଆ ହେଲାଣି—ହେଇଟି ଶୁଣୁନାହୁଁ ଦେଉଳରେ ଦିଅଁଙ୍କ ଆଳତି ବାଜୁଛି ।

( ଦୂର ଘଣ୍ଟା, ଘଣ୍ଟି ଶବ୍ଦ )

---

ମୁଦ୍ରାକର—ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର, ପ୍ରସାଦ ପ୍ରେସ, ଗଣେଶ ଘାଟ, କଟକ-୨